...ଡ଼ିଶା ଶିକ୍ଷାବିଭାଗୀୟ ଡାଇରେକ୍ଟର ମହୋଦୟଙ୍କ ତା ୧।୭।୪୭ ର ୨ ନମ୍ବର
...ନୋଟିଫିକେସନ୍‌ରେ ୮ମ ଓ ୯ମ ଶ୍ରେଣୀ ପାଇଁ ଅତିରିକ୍ତ ପାଠ୍ୟପୁସ୍ତକରୂପେ ମଞ୍ଜୁରିତ

# ଇତିହାସ-ପ୍ରସୂନ


ଲେଖକ

ଶ୍ରୀ ଚିନ୍ତାମଣି ଦାସ, ବି.ଏ., ଏଲ୍. ଟି.


ନୂତନ ମୁଦ୍ରଣ


ପ୍ରକାଶକ

ଶ୍ରୀ ଉମାଚରଣ ମହାନ୍ତି

ପ୍ରୋପ୍ରାଇଟର, କଟକ ପବ୍ଲିଶିଂ ହାଉସ୍

ନୟାସଡ଼କ, କଟକ,

୧୯୪୭

ମୂଲ୍ୟ ଠ ୦ ୫/

ଦଶଅଣା ମାତ୍ର

ଅତିରିକ୍ତ ପାଞ୍ଚଅଣା

# ଉତ୍ସର୍ଗ ପତ୍ର

ଓଡ଼ିଶାର ସୁପ୍ରସିଦ୍ଧ ଐତିହାସିକ ସ୍ୱର୍ଗୀୟ କୃପାସିନ୍ଧୁ ମିଶ୍ରଙ୍କର
ମହନୀୟ ନାମରେ ଏହି କ୍ଷୁଦ୍ର ପୁସ୍ତକ
"ଇତିହାସ-ପ୍ରସୂନ" ଲେଖକର
ଅନ୍ତରର ଭକ୍ତି ଓ ସମ୍ମାନର
ନିଦର୍ଶନ ସ୍ୱରୂପ
ଉତ୍ସୃଷ୍ଟ
ହୋଇ



# ମୁଖବନ୍ଧ

ପାଶ୍ଚାତ୍ୟର ଅନ୍ୟାନ୍ୟ ବିଷୟ ପରି ଓଡ଼ିଶାରେ ଇତିହାସ ଚର୍ଚ୍ଚା ମଧ୍ୟ ଅତି ବହୁ ପଛରେ । ଏ ଦେଶର କୌଣସି ଐତିହାସିକ ଏ ପର୍ଯ୍ୟନ୍ତ ଓଡ଼ିଆ କିମ୍ବା ଇଂରେଜୀରେ ଖଣ୍ଡିଏ ପୂର୍ଣ୍ଣାଙ୍ଗ ଉତ୍କଳ ଇତିହାସ ଲେଖି ନାହାନ୍ତି । ଓଡ଼ିଶା ଇତିହାସର ବହୁ ଘଟନା ଅତି ବୈଦେଶିକ ଐତିହାସିକମାନଙ୍କ ଲେଖନୀରେ ବିକୃତ ହୋଇ ପଡ଼ିଛି । ଓଡ଼ିଶାରେ ଇତିହାସର ବହୁତ ଉପାଦାନ ଥିବାରୁ ଯେ କୌଣସି ଇତିହାସସମ୍ପୃକ୍ତ ଲେଖକ ଏଥିରେ ହାତ ଦେଇଅଛନ୍ତି । କିନ୍ତୁ କେହି ସମ୍ପୂର୍ଣ୍ଣ କୃତକାର୍ଯ୍ୟ ହୋଇ ନାହାନ୍ତି । ମୂଳତଃ ଆମ୍ଭମାନଙ୍କ ମଧ୍ୟରେ ଅତି ଇତିହାସ ଚର୍ଚ୍ଚାର ପ୍ରବୃତ୍ତି ଜାଗ୍ରତ ହୋଇ ନାହିଁ । ଅତୀତ ଇତିହାସ ଯେ ଜାତିର ପ୍ରକୃତ ମେରୁଦଣ୍ଡ ଏ କଥା ଆମ୍ଭ ଦେଶର କେତେଜଣ ଲୋକ ଅତି ଉପଲବ୍ଧି କରିଅଛନ୍ତି ?

ଅବଶ୍ୟ ଏହି କ୍ଷୁଦ୍ର ପୁସ୍ତକ ଲେଖି ଏ ଅକିଞ୍ଚନ ଲେଖକ ଯେ ଓଡ଼ିଶାର ଏହି ଜାତୀୟ ଅଭାବ ଦୂର କରିପାରିବ, ଏ ଔଦ୍ଧତ୍ୟ ତାହାର ନାହିଁ । କେତେକ ଐତିହାସିକ ଜଟିଳ ସମସ୍ୟା ବୈଜ୍ଞାନିକ ପ୍ରଣାଳୀରେ ଆଲୋଚନା କରି ଏ ଦେଶର ଶିକ୍ଷିତ ସାଧାରଣଙ୍କ ମଧ୍ୟରେ ଇତିହାସ ଚର୍ଚ୍ଚାର ସ୍ପୃହା ଓ ପ୍ରବୃତ୍ତି ସମ୍ୟକ୍ ଜାଗରିତ କରି ପାରିଲେ ଶ୍ରମ ସାର୍ଥକ ହେବ ବୋଲି ମନେ କରିବ ।

ଏ ଦେଶରେ ଇତିହାସ ଚର୍ଚ୍ଚା ସେତେ ବିଶେଷ ନ ହୋଇଥିବାରୁ ଏବଂ ଏ ପର୍ଯ୍ୟନ୍ତ ଛାତ୍ରମଣ୍ଡଳୀ ଓ ଶିକ୍ଷିତ ସାଧାରଣ ଇତିହାସକୁ ଶୁଷ୍କ ଓ ନୀରସ ବିଷୟ ବୋଲି ଜ୍ଞାନ କରୁଥିବାରୁ ମୁଁ ଓଡ଼ିଶା କିମ୍ବା ଭାରତର କୌଣସି ଧାରାବାହିକ ସୁଦୀର୍ଘ ଇତିହାସ ଲେଖିବାର ପ୍ରଚେଷ୍ଟାରୁ ନିବୃତ୍ତ ହୋଇ କେବଳ ପ୍ରାଚୀନ କଳିଙ୍ଗ ଓ ଖାରବେଳର

ଜେତେକ ଜଟିଳ ସମସ୍ୟାର ଆଲୋଚନାରେ ପ୍ରବୃତ୍ତ ହେଲି । ବିଷୟ ଗୁଡ଼ିକର ତାହା ସହିତ ତାହାର ଘନିଷ୍ଠ ସମ୍ପର୍କ ନ ଥିଲେ ସୁଦ୍ଧା ପ୍ରତ୍ୟେକ ଯେ କଳିଙ୍ଗ ଓ ଭାରତର ନିରବଚ୍ଛିନ୍ନ ସଭ୍ୟତା ଓ ସଂସ୍କୃତି ପରମ୍ପରାର ଗୋଟିଏ ଗୋଟିଏ ଅଚ୍ଛେଦ୍ୟ ଅଙ୍ଗ ଏ କଥା ବିଜ୍ଞ ଲୋକ ମାନଙ୍କେ ସ୍ୱୀକାର କରିବେ ।

ସ୍ୱର୍ଗୀୟ ଐତିହାସିକ କୃପାସିନ୍ଧୁ ମିଶ୍ର ଏ ଦେଶରେ ମୌଳିକ ଇତିହାସ-ଗବେଷଣାର ପନ୍ଥା ସର୍ବପ୍ରଥମେ ଆମ୍ଭମାନଙ୍କୁ ଦେଖାଇ ଜାତିର କୃତଜ୍ଞତାଭାଜନ ହୋଇଅଛନ୍ତି । ତଥାପି ଆମ୍ଭେମାନେ ତାଙ୍କୁ ଚିହ୍ନି ପାରି ନାହୁଁ । ତାହାଙ୍କର ପ୍ରତିଭାର ପୂଜା ଏ ଜାତି କରି ପାରି ନାହିଁ । ସେଥିପାଇଁ ତାହାଙ୍କର ପବିତ୍ର ବନ୍ଦନୀୟ ସ୍ମୃତି ସହିତ ଏ ପୁସ୍ତକକୁ ଜଡ଼ିତ କରିବା ନିମନ୍ତେ ମୁଁ ଏ କ୍ଷୁଦ୍ର ପୁସ୍ତକକୁ ତାଙ୍କର ଅମର ନାମରେ ଉତ୍ସର୍ଗ କରିଅଛି, ଏବଂ ଏହି ପୁସ୍ତକର ଦ୍ୱିତୀୟପ୍ରବନ୍ଧ 'ମୈତ୍ରେୟବନ' ବିଶେଷ ଭାବରେ ତାଙ୍କର ଚିନ୍ତା, ଗବେଷଣା ଓ ଭାଷା ଉପରେ ପ୍ରତିଷ୍ଠିତ ।

ଅନ୍ୟାନ୍ୟ ପ୍ରବନ୍ଧମାନଙ୍କରେ ମୋର କୌଣସି ମୌଳିକତା ଅବଶ୍ୟ ନାହିଁ । ଜେବ୍‌ଉନିସା ଓ ଅଧୁନିକ ଭାରତ ଲେଖିବାରେ ମୁଁ ବଙ୍ଗଳାର ପ୍ରସିଦ୍ଧ ଐତିହାସିକ ସାର୍ ଯଦୁନାଥ ସରକାରଙ୍କ ପୁସ୍ତକ-ମାନଙ୍କରୁ ବହୁତ ସାହାଯ୍ୟ ପାଇଅଛି । ସେଥିପାଇଁ ମୁଁ ତାଙ୍କଠାରେ ଚିର ଋଣୀ । ଓଡ଼ିଶାର ଇତିହାସ ସମ୍ବନ୍ଧୀୟ ପ୍ରବନ୍ଧମାନଙ୍କରେ ମୁଁ ଐତିହାସିକ ଭିନ୍‌ସେଣ୍ଟ ସ୍ମିଥ୍, ସ୍ୱର୍ଗୀୟ ରାଖାଲ ଦାସ ବାନାର୍ଜି, ମନମୋହନ ଗାଙ୍ଗୁଲି, ରାଧାକୁମୁଦ ମୁଖର୍ଜି ଓ ସ୍ୱର୍ଗୀୟ କୃପାସିନ୍ଧୁ ମିଶ୍ର ପ୍ରଭୃତି ସୁପ୍ରସିଦ୍ଧ ଗ୍ରନ୍ଥକାରମାନଙ୍କର ପୁସ୍ତକମାନଙ୍କରୁ ବହୁ ଉତ୍ସାହ, ପ୍ରେରଣା, ଚିନ୍ତା ଓ ସାହାଯ୍ୟ ପାଇଅଛି । କିନ୍ତୁ ସେମାନଙ୍କର ଚିନ୍ତା-

ସ୍ରୋତରେ ମୁଁ ନିଜକୁ ସମ୍ପୂର୍ଣ୍ଣ ଭାବରେ ଭସାଇ ଦେଇ ନିଜର ଅସ୍ତିତ୍ୱ ହରାଇ ନାହିଁ । ପ୍ରତ୍ୟେକ ବିଷୟରେ ମୁଁ ମୌଳିକ ଗ୍ରନ୍ଥମାନ ଅତି ସାବଧାନତାର ସହିତ ଅଧ୍ୟୟନ କରିଅଛି । ଯେଉଁ ଐତିହାସିକ-ମାନଙ୍କଠାରୁ ମୁଁ ଯଥେଷ୍ଟ ଇଙ୍ଗିତ ଓ ସାହାଯ୍ୟ ପାଇଅଛି ସେମାନଙ୍କର ମତକୁ ସ୍ଥଳ ବିଶେଷରେ ଖଣ୍ଡନ କିମ୍ବା ମଣ୍ଡନ କରିବାକୁ ଯଥାସାଧ୍ୟ ଚେଷ୍ଟା କରିଅଛି । ବଙ୍ଗଳାର ସୁପ୍ରସିଦ୍ଧ ପଣ୍ଡିତ ବିନୟକୁମାର ସରକାରଙ୍କର ଐତିହାସିକ ପ୍ରବନ୍ଧ ଓ ଇଂରେଜୀ ପୁସ୍ତିକା "The science of history and the hope of mankind" ରୁ ମଧ୍ୟ ମୁଁ ଅନେକ ଐତିହାସିକ ତତ୍ତ୍ୱ ଗ୍ରହଣ କରିଅଛି । ଏତଦ୍-ବ୍ୟତୀତ "Modern Review" ଏବଂ "Journal of Bihar & Orissa Research Society" ପ୍ରଭୃତି ମାସିକପତ୍ରିକାମାନଙ୍କରୁ ମଧ୍ୟ ଅନେକ ସାହାଯ୍ୟ ମିଳିଅଛି । ମୋର ମତର ପୋଷକତା ନିମନ୍ତେ ମୁଁ ବହୁ ପ୍ରସିଦ୍ଧ ଗ୍ରନ୍ଥମାନଙ୍କରୁ ବିଶିଷ୍ଟ ଅଂଶମାନ ଉଦ୍ଧାର କରିଅଛି । ସତ୍ୟକୁ ବଳବତ୍ତର ଓ ଅଦ୍ଭୁତ ଦୃଢ଼ୀଭୂତ କରିବା ନିମନ୍ତେ ମୁଁ ଯଥେଷ୍ଟ ଐତିହାସିକ ସାକ୍ଷ୍ୟ ଦେବାକୁ ଚେଷ୍ଟା ମଧ୍ୟ କରିଅଛି ।

ତଥାପି ଏ ପୁସ୍ତକ ଭ୍ରମପ୍ରମାଦଶୂନ୍ୟ ନୁହେଁ । ମୋଠାରୁ ଅଧିକ ପ୍ରତିଭାଶାଳୀ ଓ ଇତିହାସ-ସ୍ପୃହ ପଣ୍ଡିତମାନେ ଏହି ପ୍ରବନ୍ଧମାନଙ୍କରେ ହାତ ଦେଇଥିଲେ ଏ ଗୁଡ଼ିକ ଯେ ସର୍ବାଙ୍ଗସୁନ୍ଦର ହୋଇ ପାରି ଥାଆନ୍ତେ ଏଥିରେ ମୋର ସନ୍ଦେହ ନାହିଁ । କିନ୍ତୁ ଏହି ପ୍ରବନ୍ଧଗୁଡ଼ିକ ପାଠକରି ଯଦି କେହି କେହି ସେହି ବିଷୟମାନଙ୍କରେ ଉଚ୍ଚତର ଆଲୋଚନାରେ ପ୍ରବୃତ୍ତ ହୁଅନ୍ତି ଏବଂ ଏହି ପ୍ରବନ୍ଧମାନଙ୍କର ଉପାଦେୟତା ଉପଲବ୍ଧି କରନ୍ତି, ତେବେ ପରିଶ୍ରମ ପଣ୍ଡ ହୋଇ ନାହିଁ ବୋଲି ମନେ କରିବି ।

।

ପରିଶେଷରେ ଏତିକି ମାତ୍ର ବକ୍ତବ୍ୟ ଯେ ଯେଉଁ ସହୃଦୟ ବନ୍ଧୁମାନଙ୍କର ଉତ୍ସାହ ଓ ପ୍ରେରଣାରେ ମୁଁ ଏହି ଶମଯାଧ ପୁସ୍ତକ ପ୍ରଣୟନରେ ପ୍ରବୃତ୍ତ ହେଲି ସେମାନଙ୍କଠାରେ ମୁଁ ଆନ୍ତରିକ କୃତଜ୍ଞତା ଜ୍ଞାପନ କରୁଅଛି ।

ସତ୍ୟବାଦୀ ସ୍କୁଲ
୬ । ୩ । ୩୭ } ଶ୍ରୀ ଚିନ୍ତାମଣି ଦାସ

# ସୂଚୀପତ୍ର

# ଇତିହାସ-ପ୍ରସୂନ

---

## ଇତିହାସର ଇଙ୍ଗିତ

ଆଜି ଯେ ଆମ୍ଭମାନଙ୍କ ଦେଶରେ ଇତିହାସ ଚର୍ଚ୍ଚାର ଗୋଟିଏ ପ୍ରବୃତ୍ତି ଜାଗରୂକ ହୋଇଅଛି, ଦେଶ ଓ ଜାତିର ସୁମହାନ୍ ଅତୀତକୁ ପୂଜା କରିବାର ବଳବତୀ ବାସନା ଆମ୍ଭମାନଙ୍କ ଦେଶରେ ଜନନାୟକ-ମାନଙ୍କ ହୃଦୟକୁ ଅନୁପ୍ରାଣିତ ଓ ତରଙ୍ଗାୟିତ କରୁଅଛି; ଅତୀତର ଅନ୍ଧକାରରୁ ପ୍ରେରଣା ପାଇ ଜାତିର ବର୍ତ୍ତମାନ ଓ ଭବିଷ୍ୟତକୁ ଗଠନ କରିବାର ପ୍ରବୃତ୍ତି ଆମ୍ଭମାନଙ୍କ ଦେଶର ଦେଶସେବୀମାନଙ୍କର କର୍ମ ପଦ୍ଧତିକୁ ଗୃଳିତ ଓ ନିୟନ୍ତ୍ରିତ କରୁଅଛି ଏବଂ 'ଇତିହାସ ଜାତିର ମେରୁଦଣ୍ଡ ସ୍ୱରୂପ' ଏହି ବଳିଷ୍ଠ ଭାବ ଆଜି ଆମ୍ଭମାନଙ୍କ ହୃଦୟର ପ୍ରତ୍ୟେକ ତନ୍ତ୍ରୀକୁ ଆଘାତ କରୁଅଛି; ଏହା ଯେ ଆମ୍ଭମାନଙ୍କର ଜାତୀୟ ପ୍ରାଣର ପୁଷ୍ଟ ବିକାଶର ଜ୍ୱଳନ୍ତ ନିଦର୍ଶନ; ଏଥିରେ ଅଣୁମାତ୍ର ସନ୍ଦେହ ନାହିଁ । ଇତିହାସ ଜ୍ଞାନ ଜାତୀୟ ଜୀବନର ପ୍ରଥମ ସୋପାନ । ଯେଉଁ ପରିମାଣରେ ଅତୀତ ଜଗତ ସମ୍ବନ୍ଧରେ ପ୍ରକୃତ ସତ୍ୟ ଆବିଷ୍କୃତ ହେବ, ଯେଉଁ ପରିମାଣରେ ଅତୀତର ଅମୂଲ୍ୟ ଉପଦେଶ ବର୍ତ୍ତମାନ ଯୁଗର କାର୍ଯ୍ୟରେ ପରିଣତ ହୋଇ ପାରିବ, ସେହି ପରିମାଣରେ ଆମ୍ଭମାନଙ୍କର ଜନଗଣ-ମନ ନ୍ୟାୟ ଓ ସତ୍ୟ ପଥରେ ଧାବିତ ହେଉଥିବ, ଆମ୍ଭମାନଙ୍କର ସମବେତ ଶକ୍ତି ଫଳପ୍ରସୂ ହେବ ।

ଇତିହାସ କାବ୍ୟ ନୁହେଁ । ନାନାପ୍ରକାର ରସର ଅବତାରଣା କରି ମନୋରଞ୍ଜନ ଓ ଚିତ୍ତବିନୋଦନ କରିବା ଇତିହାସର କାର୍ଯ୍ୟ ନୁହେଁ । କଳ୍ପନାପ୍ରସୂତ ଲଳିତ ଆଖ୍ୟାନ କିମ୍ବା ଶୁଷ୍କ ଗବେଷଣା ଏହାର ଚରମ ଫଳ ନୁହେଁ । ରାଷ୍ଟ୍ରନେତା ଓ ସମାଜନେତାଙ୍କ ପକ୍ଷରେ ଇତିହାସ ସର୍ବଶ୍ରେଷ୍ଠ ଶିକ୍ଷକ, ପଥ-ପ୍ରଦର୍ଶକ ଓ ସହାୟକ । ଇତିହାସ ସାହାଯ୍ୟରେ ଅତୀତ କାଳର ସ୍ୱରୂପ ଜାଣି ସେହି ଜ୍ଞାନ ବର୍ତ୍ତମାନ କାଳରେ ପ୍ରୟୋଗ କରି ଜାତିର ବର୍ତ୍ତମାନ ଓ ଭବିଷ୍ୟତକୁ ମଙ୍ଗଳ ଓ କଲ୍ୟାଣ ପଥରେ ଚାଳିତ କରିଯାଇ ପାରେ । ଦୂରବର୍ତ୍ତୀ ଯୁଗରେ କିମ୍ବା ଦେଶରେ ମାନବ-ଭ୍ରାତାମାନେ କି କାର୍ଯ୍ୟ କରି, କେଉଁ ଉପାୟରେ, କି ନୀତି ଅବଲମ୍ବନ କରି, କେଉଁ ବଳରେ ବଳୀୟାନ୍ ହୋଇ, ଜାତୀୟ ଉନ୍ନତିର ଚରମ ସୀମାରେ ଉପନୀତ ହୋଇଥିଲେ, କେଉଁ କାରଣରୁ ଅଧଃପତନ ଓ ଅବନତିର ଅତଳ ଅସ୍ପର୍ଶ ଗହ୍ୱରକୁ ସ୍ଖଳିତ ହେଲେ; ଗ୍ରୀସ୍, ରୋମ୍, ମିଶର, ମୌର୍ଯ୍ୟ, ମୋଗଲ, ଶିଖ ଓ ମରହଟ୍ଟା ସାମ୍ରାଜ୍ୟ କି ଭାବରେ ଗଠିତ ହୋଇଥିଲା, କାହିଁକି ସେମାନଙ୍କର ଧ୍ୱଂସ ଓ ପତନ ହେଲା, ଏହିକି ତତ୍ତ୍ୱ ଓ ବହୁ ସତ୍ୟକୁ ହୃଦୟଙ୍ଗମ କରି ଆମ୍ଭମାନଙ୍କର ଜାତି ଓ ଦେଶର ବର୍ତ୍ତମାନ ଓ ଭବିଷ୍ୟତକୁ ନିୟନ୍ତ୍ରିତ କରିବାକୁ ହେବ । ସୁଦୂର ଅତୀତର ଅନ୍ଧକାରରୁ ଉଦ୍ଧାର କରିଯାଇଥିବା ସତ୍ୟ ଓ ଦୃଷ୍ଟାନ୍ତର ଉଜ୍ଜ୍ୱଳ ଦୀପଶିଖା ଆମ୍ଭମାନଙ୍କର ବର୍ତ୍ତମାନ ଓ ଭବିଷ୍ୟତକୁ ନୂତନ ଆଲୋକ ଓ ତେଜରେ ଉଦ୍ଭାସିତ କରେ । ପ୍ରକୃତ ଇତିହାସ ଶୁଷ୍କ ଓ ମୃତ ଅତୀତକୁ ଜୀବନ୍ତ କରି ଚଳଚ୍ଚିତ୍ରର ଛବିପରି ଆମ୍ଭମାନଙ୍କ ଆଖି ଆଗରେ ନାଚିଯାଏ; ଆମ୍ଭେମାନେ ସତେ ଯେପରି ସେହି ସୁଦୂର କାଳ ଓ ଦେଶର ଲୋକମାନଙ୍କ ମନ ଓ ଦେହ ମଧ୍ୟରେ ପ୍ରବେଶ କରି ସେହିମାନଙ୍କର ଭାବ, ଚିନ୍ତା ଓ ଆଦର୍ଶରେ ଅନୁପ୍ରାଣିତ ହେଉଁ,

ସେହିମାନଙ୍କର ସୁଖ, ଦୁଃଖ, ଯଶ ଓ ଭୟ ଆମ୍ଭେମାନେ ନିଜ ନିଜ ହୃଦୟରେ ଅନୁଭବ କରୁ । ଏହିପରି ଅତୀତକାଳର ଅବିକଳ ଓ ପୂର୍ଣ୍ଣାଙ୍ଗ ସତ୍ୟ ଉପଲବ୍ଧି କରିବାକୁ ଶିକ୍ଷା ଦେବା ଇତିହାସର ଉଦ୍ଦେଶ୍ୟ ଓ ଲକ୍ଷ୍ୟ ।

'ସତ୍ୟଂ ଶିବଂ ସୁନ୍ଦରଂ' । ପ୍ରାଚୀନ ଯୁଗର ଏହି ଅମୂଲ୍ୟ ଉପଦେଶ ପ୍ରତ୍ୟେକ ଐତିହାସିକର ମୂଳମନ୍ତ୍ର ହେବା ଉଚିତ । ଯେଉଁ ଇତିହାସ ଜାତିର ଭବିଷ୍ୟତକୁ ଏତେଦୂର ପ୍ରଭାବିତ କରିପାରେ, ସେହି ଇତିହାସରୁ ସମସ୍ତ ପ୍ରକାର ଅସତ୍ୟ, କଳ୍ପନା, ଅର୍ଦ୍ଧସତ୍ୟ ଓ ଅତିରଂଜନ ଦୂର କରିବାକୁ ହେବ । ପ୍ରକୃତ ସତ୍ୟର ଦୃଢ଼ ପ୍ରସ୍ତରମୟ ଭିତ୍ତି ଉପରେ ଇତିହାସକୁ ଛିଡ଼ା କରିବାକୁ ହେବ । ପ୍ରକୃତ ଐତିହାସିକ ଜନସମୂହକୁ ଜାତିର ଉତ୍ଥାନ, ପତନ, ରୋଗ, ସ୍ୱାସ୍ଥ୍ୟ, ନବଜୀବନ ଲାଭ ଓ ମୃତ୍ୟୁ ସମ୍ବନ୍ଧରେ ନାନା ଶିକ୍ଷା ଦଅନ୍ତି । ଏହି ମହାଶିବ ମନ୍ତ୍ର, ଏହି ଜାତୀୟ ଆୟୁର୍ବେଦଶାସ୍ତ୍ର, ବିନା ସାଧନାରେ, ବିନା ସତ୍ୟନିଷ୍ଠାରେ ପୂର୍ଣ୍ଣତା ପାଇବା ଅସମ୍ଭବ । ଐତିହାସିକକୁ କଳ୍ପନାଜଗତର ବହୁଦୂରରେ ରହିବାକୁ ହେବ । ସତ୍ୟ ନିର୍ଦ୍ଧାରଣ କରି ନ ପାରିଲେ ଐତିହାସିକର କାର୍ଯ୍ୟ ଅସମ୍ପୂର୍ଣ୍ଣ ରହିଲା, ତାହାର ସମସ୍ତ ଶ୍ରମ ପଣ୍ଡ ଓ ବ୍ୟର୍ଥ ହେଲା ବୋଲି ବୁଝିବାକୁ ହେବ । ଯଶ, ଧନ କିମ୍ବା ବ୍ୟକ୍ତିଗତ ପ୍ରତିପତ୍ତିର ସମସ୍ତ ଲାଳସା ଓ ବାସନା ପରିତ୍ୟାଗ କରି, ନିଜର ଅନ୍ତରର ଅନୁରାଗ ଓ ବିରାଗକୁ ଦମନ କରି, ପୂର୍ବ ସଂସ୍କାରକୁ ବର୍ଜନ କରି ଐତିହାସିକକୁ ଦୃଢ଼ ପ୍ରତିଜ୍ଞା କରିବାକୁ ହେବ—"ମୁଁ ସତ୍ୟର ଅନୁସନ୍ଧାନରେ ଆଜୀବନ ସମସ୍ତ ମନ, ପ୍ରାଣ, ଧନ, ମାନ ଓ ଶକ୍ତି ସମର୍ପଣ କଲି । ସତ୍ୟକୁ ହୃଦୟଙ୍ଗମ କରିବା, ସତ୍ୟର ପୂଜା ଓ ଅର୍ଚ୍ଚନା କରିବା, ସତ୍ୟର ଅନୁସନ୍ଧାନ କରିବା, ଜାତିର କଲ୍ୟାଣ ନିମନ୍ତେ ଅଜ୍ଞାତର ଅନ୍ଧକାରରୁ ଅତ୍ୟନ୍ତ ସତର୍କତା

ଓ ସାବଧାନତା ସହିତ ବିଶୁଦ୍ଧ ସତ୍ୟ ଆହରଣ କରିବା ମୋ ଜୀବନର କଠୋର ବ୍ରତ ହେଲା ।"

ସତ୍ୟ ପ୍ରିୟ ହେଉ କିମ୍ବା ଅପ୍ରିୟ ହେଉ, ସାଧାରଣରେ ଗୃହୀତ ହେଉ କିମ୍ବା ନ ହେଉ, ସେକଥା ଐତିହାସିକ ଭାବିବାକୁ ଯିବ ନାହିଁ । ଇତିହାସର କଠୋର ସତ୍ୟ ଅନେକ ସମୟରେ ସ୍ବଦେଶ ଗୌରବକୁ ଆଘାତ କରିପାରେ, ତଥାପି ସେ ସତ୍ୟକୁ ଅନୁସନ୍ଧାନ କରି ପ୍ରକାଶ କରିବାକୁ ହେବ । ସତ୍ୟ ପ୍ରଚାର କରିବା ଫଳରେ ସମାଜରେ କିମ୍ବା ବନ୍ଧୁମାନଙ୍କ ମଧ୍ୟରେ ଉପହାସ, ଭର୍ତ୍ସନା, ଓ ଗଂଜଣା ସହ୍ୟ କରିବାକୁ ପଡ଼ିବ, ଅତ୍ୟାଚାରୀର ଶାଣିତ କରବାଲରେ ବକ୍ଷର ଶୋଣିତ ଦେବାକୁ ହେବ । ତଥାପି ସତ୍ୟର ଅନୁସନ୍ଧାନ କରିବାକୁ ହେବ । ପ୍ରମାଣ ନ ପାଇଲେ ଐତିହାସିକ କୌଣସି ସତ୍ୟକୁ ଅଭ୍ରାନ୍ତ ବୋଲି ଧରିନେବ ନାହିଁ । ଯଦି ସେ ବିଶ୍ବାସ କରେ, ଭାରତର ଅତି ପ୍ରାଚୀନ କାଳର ମହାକାବ୍ୟ ରାମାୟଣ ଓ ମହାଭାରତ କେବଳ ମନଗଢ଼ା କାଳ୍ପନିକ ଅସାର ଗଳ୍ପ-କାହାଣୀରେ ପୂର୍ଣ୍ଣ, ତେବେ ଏ କଠୋର ଓ ନିର୍ମମ ସତ୍ୟତାକୁ ଅବିଷ୍କାର କରି ପ୍ରଚାର କରିବାକୁ ହେବ । ଏହି ସତ୍ୟ ପ୍ରଚାରରେ ଅମ୍ଭମାନଙ୍କର ହିନ୍ଦୁ ଧର୍ମର ମାନ ଓ ଗୌରବ ହ୍ରାସ ହୋଇପାରେ । ସମାଲୋଚନାର ତୀକ୍ଷ୍ଣ ବାଣରେ ଅମ୍ଭମାନଙ୍କର ଶରୀର କ୍ଷତାକ୍ତ ହୋଇପାରେ, ତଥାପି ଇତିହାସର ଉପଦେଶ, ସତ୍ୟ ଆବିଷ୍କାର କରି ପ୍ରଚାର କରିବାକୁ ହେବ । ପ୍ରକୃତ ଐତିହାସିକକୁ ହୃଦୟରକ୍ତରେ ସତ୍ୟର ଅନୁସନ୍ଧାନ କରିବାକୁ ହେବ ।

ସତ୍ୟ ଓ ଧର୍ମର ପ୍ରତିଷ୍ଠା ନିମନ୍ତେ ଅସତ୍ୟ, ଅବିଦ୍ୟା ଓ ଅଧର୍ମ ଧ୍ବଂସ କରିବା ଉଦ୍ଦେଶ୍ୟରେ ଏ ପୃଥିବୀରେ ବହୁବାର ରକ୍ତପାତ ହୋଇଅଛି । ଧର୍ମର ସଂସ୍ଥାପନ ନିମନ୍ତେ ନାନା ଯୁଗରେ ପୃଥିବୀର

ନାନା ଦେଶରେ ମହାପୁରୁଷମାନେ ଜନ୍ମଗ୍ରହଣ କରି ଅନ୍ଧକାର-ନିମଜ୍ଜିତ ମୋହାଚ୍ଛନ୍ନ ମାନବଜାତିକୁ ନୂତନ ଆଦର୍ଶ, ନୂତନ ଶକ୍ତି ଓ ମୁକ୍ତିର ନୂତନ ପଥ ଦେଖାଇ ଚିର ଅମରତା ଲାଭ କରିଅଛନ୍ତି । ସକ୍ରେଟିସ୍ ଗ୍ରୀକ୍ ଯୁବକମାନଙ୍କର ଅବିଦ୍ୟା ଓ ମୂର୍ଖତା ଦୂର କରିବା ନିମନ୍ତେ ବହୁ ଯତ୍ନ କଲେ । କିନ୍ତୁ ଫଳ ହେଲା କଣ ? ବନ୍ଦୀତ୍ୱ କଠୋର ଦଣ୍ଡ—ବିଷପାନ ଓ ମୃତ୍ୟୁ । କିନ୍ତୁ ସକ୍ରେଟିସଙ୍କର ମୃତ୍ୟୁ ତାଙ୍କ ପ୍ରଚାରିତ ଧର୍ମ୍ମ ଓ ସତ୍ୟକୁ ଧ୍ୱଂସ କରି ପାରିଲା ନାହିଁ । ଆରବୀୟମାନଙ୍କର ଅଜ୍ଞାନ ଓ ଅସଭ୍ୟତାରେ କ୍ଷୁଣ୍ଣ ହୋଇ ମହମ୍ମଦ ପୃଥିବୀରେ ଏକ ଅଭିନବ ଧର୍ମ ପ୍ରଚାର କଲେ । ଏ କାର୍ଯ୍ୟରେ ତାଙ୍କୁ ବହୁ ନିର୍ଯାତନା, ମର୍ମନ୍ତୁଦ ଅପମାନ ଓ ବିବିଧ ଯନ୍ତ୍ରଣା ସହ୍ୟ କରିବାକୁ ପଡ଼ିଲା, କିନ୍ତୁ ଶେଷରେ ମହମ୍ମଦଙ୍କର ବିଜୟ ଦୁନ୍ଦୁଭି ପୃଥିବୀରେ ଅଳ୍ପ ସମୟ ମଧ୍ୟରେ ବାଜି ଉଠିଲା, ମୁସଲମାନ ଧର୍ମର ଉଚ୍ଛ୍ୱସିତ ବନ୍ୟାରେ ସାରା ପୃଥିବୀ ପ୍ଲାବିତ ହୋଇଗଲା । ହିନ୍ଦୁମାନଙ୍କର ନିର୍ମମ ଜୀବ ହିଂସାରେ କ୍ଷତ୍ରିୟକୁଳତିଳକ କପିଳବାସ୍ତୁ ରାଜକୁମାରଙ୍କର ବିଶାଳ ହୃଦୟ ବିଦ୍ରୋହରେ ଗର୍ଜ୍ଜି ଉଠିଲା । ଫଳରେ 'ଅହିଂସା ପରମୋ ଧର୍ମ'ର ବିଜୟ-ଧ୍ୱନିରେ ସମସ୍ତ ପୃଥିବୀ ନିନାଦିତ ହେଲା । ଏହି ବୌଦ୍ଧ ଧର୍ମକୁ ଧ୍ୱଂସ କରି ଭାରତରେ ହିନ୍ଦୁଧର୍ମର ପ୍ରାଧାନ୍ୟ ବିସ୍ତାର କରିବାକୁ ହିନ୍ଦୁମାନେ କମ୍ ଚେଷ୍ଟା ଓ ଯତ୍ନ କରି ନାହାନ୍ତି; କିନ୍ତୁ ଫଳରେ ଟିକେଟେକାଳ ପାଇଁ ବୌଦ୍ଧଧର୍ମ ଭାରତ ଭୂମିରେ ପ୍ରବଳ ଓ ଶକ୍ତିଶାଳୀ ହୋଇ ରହିଲା । ଏବେ ସୁଦ୍ଧା ସମସ୍ତ ହିନ୍ଦୁ-ଜଗତର ପରମ ଆରାଧ୍ୟ ଦେବତା ଜଗନ୍ନାଥଙ୍କଠାରେ କେହି କେହି ବୌଦ୍ଧତ୍ୱ ଆରୋପ କରନ୍ତି । * ଇତିହାସର ବିସ୍ମୃତିଭୂତ

* Ganguli's "Ori[illegible] remains" pp. 408-409.

ଏହୁ ନାନା ପ୍ରକାର ବ୍ୟାପାରରେ ମଧ୍ୟ ଭଗବାନଙ୍କର ଇଙ୍ଗିତ ସ୍ପଷ୍ଟ ଦେଖାଯାଏ । ବ୍ୟକ୍ତିର ଜୀବନପରି ଜାତୀୟ ଜୀବନରେ ମଧ୍ୟ ଭଗବାନଙ୍କର ଇଚ୍ଛା କାର୍ଯ୍ୟ କରେ। ଜୀବର ଜନ୍ମ ହୁଏ—କୈଶୋର, ଯୌବନ ଓ ଜରାରେ ସେ ଅନେକ କାର୍ଯ୍ୟ କରେ, ଅନେକ ଚିନ୍ତା କରେ, ତା ପରେ ସେ ମରିଯାଏ । ଜୀବନରେ ମରଣରେ ଉତ୍ଥାନ, ପତନ, ଅଭ୍ୟୁଦୟ ଓ ବିଲୟ ପ୍ରଭୃତି ନାନା ଅବସ୍ଥା ମଧ୍ୟରେ ତାହାର ବିଶେଷତ୍ୱ ପ୍ରକାଶ ପାଏ, ତାହାର ବ୍ୟକ୍ତିତ୍ୱ ଫୁଟି ଉଠେ । ଯେଉଁ ଉଦ୍ଦେଶ୍ୟରେ ତାହାର ସୃଷ୍ଟି, ଲୋକ-ସମାଜ ନିମନ୍ତେ ଯେ କର୍ମ ଚିନ୍ତା କରିବାର ଭାର ତା ଉପରେ ନ୍ୟସ୍ତ ପୃଥିବୀର ଯେତିକି କାର୍ଯ୍ୟ ସେ କରିବାକୁ ପ୍ରସ୍ତୁତ ସେତିକି କାର୍ଯ୍ୟ କରିପାରିଲେ ତାହାର ଜୀବନ ସାର୍ଥକ ହୁଏ । କର୍ତ୍ତବ୍ୟ ସାଧନ କରିବାକୁ ଯାଇ ମନୁଷ୍ୟଙ୍କୁ ଅଶେଷ ଘଟଣା ଓ କାର୍ଯ୍ୟାବଳୀର ସମ୍ମୁଖୀନ ହେବାକୁ ପଡ଼େ । କୌଣସି କୌଣସି ସମୟରେ ତାହାର କିଛି ଫଳ ଲାଭ ହୁଏ । କୌଣସି କୌଣସି ସମୟରେ ତାକୁ ନିରାଶ ହେବାକୁ ପଡ଼େ । କିନ୍ତୁ ଦିନ ପରେ ଦିନ, ଅବସ୍ଥା ପରେ ଅବସ୍ଥା, ସୁଫଳ ପରେ କୁଫଳ ଅଥବା ଅସୁବିଧା ଓ ସୁବିଧା ସକଳ ପ୍ରକାର ଘଟଣା ମଧ୍ୟ ଦେଇ ସେ କର୍ତ୍ତବ୍ୟ ପଥରେ ଅଗ୍ରସର ହୁଏ । ଜାତୀୟ ଜୀବନରେ ଠିକ୍ ସେହି କଥା ପ୍ରଯୁଜ୍ୟ । ପ୍ରତ୍ୟେକ ଜାତି ଭିନ୍ନ ସମୟରେ ଭିନ୍ନ ଭିନ୍ନ କାର୍ଯ୍ୟ କରେ । ସମଗ୍ର ଲୋକ ସମାଜର, ସମସ୍ତ ମାନବ ଜାତିର ଉଦ୍ଦେଶ୍ୟରେ ତାହାର ଦାନ କରିବାର ଯେତେ ଶକ୍ତି ଅଛି, ସେତିକି ସେ ଦାନ କରି ନିଜର ସ୍ୱାତନ୍ତ୍ର୍ୟ ଓ ସଫଳତା ପ୍ରତିଷ୍ଠିତ କରେ । ଏହି ଉଦ୍ଦେଶ୍ୟରେ ପ୍ରାଚୀନ ଗ୍ରୀସ୍, ରୋମ, ମିଶର ଓ ଭାରତ ଜାତିର ଅଭ୍ୟୁଦୟ । ନିଜ ନିଜର ଦାନ ଜଗତକୁ ଉପହାର ଦେଇ, ଜଗତର ସଭ୍ୟତା ଓ ସଂସ୍କୃତିକୁ ଗୌରବଶାଳୀ କରି ଏହି

ଜାତିମାନେ ଅନ୍ତ ଇତିହାସରେ ଅବିନଶ୍ବର । ତେଣୁ ଜାତିର ଏହି ବୈଚିତ୍ର୍ୟ ଓ ବିଶେଷତ୍ୱରେ ହିଁ ଭଗବାନଙ୍କର ଅସୀମ ସୌନ୍ଦର୍ଯ୍ୟ ଓ ମହିମା ପରିସ୍ଫୁଟ । ନିଜ ନିଜର ଲକ୍ଷ୍ୟ ସାଧନ କରିବାକୁ ଯାଇ, ଜଗତର କଲ୍ୟାଣ ସାଧନ ନିମନ୍ତେ ନିଜ ନିଜର ଦାନ ଦେବାକୁ ଯାଇ, ପ୍ରତ୍ୟେକ ଜାତି ନାନା ସୁଖ ଦୁଃଖ, ନାନା ବାଧାବିଘ୍ନ, ନାନା ଘାତ ପ୍ରତିଘାତର ସମ୍ମୁଖୀନ ହୁଏ । ସେଥି ସକାଶେ ପୃଥିବୀରେ ଜାତି ଜାତି ମଧ୍ୟରେ ଏତେ ସଂଘର୍ଷ ଓ ଦ୍ୱନ୍ଦ୍ୱ, ଏତେ ରକ୍ତପାତ, ଏତେ ଯୁଦ୍ଧ ଓ ହତ୍ୟା, ଏତେ ଉତ୍ଥାନ ଓ ପତନ ।

ଜାତିର ଉତ୍ଥାନ, ପତନ, ଧ୍ୱଂସ, ବିଲୟ, ବିକାଶ ଓ ଅଭିବୃଦ୍ଧି ଏ ସକଳ ଅବସ୍ଥାରେ ଭଗବାନଙ୍କର ଇଙ୍ଗିତ ଥାଏ ଏବଂ ଅବଶେଷରେ ଭଗବାନଙ୍କର ଇଚ୍ଛା ପୂର୍ଣ୍ଣ ହୁଏ । ଏହି ସମସ୍ତ ସେହି ସର୍ବନିୟନ୍ତାଙ୍କର ନିୟମାଧୀନ । ବ୍ୟକ୍ତିଗତ ଜୀବନର ଜୀବନ-ମରଣ ପରି ସମାଜର ଅଧଃପତନ ଓ ଅଭ୍ୟୁତ୍ଥାନରେ ଭଗବଦିଚ୍ଛା କାର୍ଯ୍ୟ କରେ । ମୃତ୍ୟୁ କଦାପି ଅମଙ୍ଗଳଜନକ ନୁହେ । ଏହି ମୃତ୍ୟୁରେ ପୁନର୍ଜୀବନର ବୀଜ ପ୍ରଚ୍ଛନ୍ନ ଭାବରେ ନିହିତ ଅଛି । ମନୁଷ୍ୟ ମରି ପୁନର୍ବାର ଜନ୍ମୁଅଛି, ପୁନଶ୍ଚ ନୂତନ ଜୀବନ ଆରମ୍ଭ କରି ନୂତନ ଉଦ୍ୟମ ଓ ନୂତନ ସାହସରେ ସେହି ଜୀବନ-କର୍ମରେ ମନୋନିବେଶ କରୁଅଛି । ସେହିପରି କୌଣସି ଜାତିର ଅଧଃପତନ ଓ ଧ୍ୱଂସ ତା ପକ୍ଷରେ କଦାପି ଅମଙ୍ଗଳଜନକ ନୁହେ । ସମାଜ ଓ ଜାତି ଗୋଟିଏ ରୂପ ଓ କଳେବର ପରିତ୍ୟାଗ କରି, ନୂତନ ଆଦର୍ଶ ଓ ପ୍ରେରଣାରେ ଅନୁପ୍ରାଣିତ ହୋଇ ନୂତନ କଳେବର ଗ୍ରହଣ କରେ କିମ୍ବା ତାହାର ଆଦର୍ଶରେ ଅନ୍ୟ ଜାତି ଓ ସମାଜକୁ ଉତ୍ତରାଧିକାରୀ କରି ତାହାର ଦ୍ୱାରା କର୍ମ-ସୂତ୍ରର ଦୀର୍ଘତା ବୃଦ୍ଧି କରେ । ପ୍ରାଚୀନ ଗ୍ରୀସର ଶିଳ୍ପ-ସମୃଦ୍ଧି ଗ୍ରୀସରୁ ଲୁପ୍ତ ହେଲା । କିନ୍ତୁ ସେହି ଗ୍ରୀକ୍ ଶିଳ୍ପ-ସମୃଦ୍ଧି

ଅନ୍ୟାନ୍ୟ ଜାତିକୁ ପ୍ରଭାବିତ କରି ସେହି ଜାତିର ସଭ୍ୟତା ବୃଦ୍ଧି କରୁଅଛନ୍ତି । ଅନନ୍ତ ପରିବର୍ତ୍ତନଶୀଳ ବିଧାନରେ ମୃତ୍ୟୁ ଅବସ୍ଥାନ୍ତର ମାତ୍ର, ଅମଙ୍ଗଳଜନକ ନୁହେଁ । ବ୍ୟକ୍ତିର ଜୀବନଧାରା ଜାତୀୟ ଜୀବନର ଇତିହାସ ଆମ୍ଭମାନଙ୍କୁ ଏହି ଶିକ୍ଷା ଦିଏ, ଏହି ଉପଦେଶ ପ୍ରଦାନ କରେ । ଉନ୍ନତି, ଅବନତି, ପତନ ଓ ଉତ୍ଥାନ ମଧ୍ୟରେ ବ୍ୟକ୍ତି, ପରିବାର, ସମାଜ ଓ ଜାତି ଭଗବାନଙ୍କର ନିର୍ଦ୍ଦିଷ୍ଟ କାର୍ଯ୍ୟ ସମ୍ପନ୍ନ କରି ତାହାଙ୍କର ଇଚ୍ଛା ପୂର୍ଣ୍ଣ କରେ । ଫରାସୀ ବିପ୍ଳବ ପରି ଏ ଜଗତରେ ଅନେକ ବିପ୍ଳବ ଓ ବିକ୍ରମ ତେଜଲ ଅନ୍ୟାୟ ଘଟଣାର ଫଳେ ଜାତିର ଧ୍ୱଂସ କରିବା ନିମନ୍ତେ, ପ୍ରଜାଶକ୍ତିକୁ ଉତ୍ଥାନ ଦେବା, ସମାଜ ଓ ସଂସ୍କୃତି ପ୍ରକୃତିର ଶାସନ ସ୍ଥାପନ କରିବା ନିମନ୍ତେ ସଂଘଟିତ ହୋଇଅଛି ଏବଂ ହେବ ମଧ୍ୟ । ଯେ ଯୋଗିଛି ସେମ ଯୋଗିନାହିଁ । ଏହି ସମସ୍ତ ବିପ୍ଳବର ମୂଳ ଉଦ୍ଦେଶ୍ୟ ଲୋକର କଲ୍ୟାଣ ସାଧନ । ଏହି ଘଟଣାଙ୍କଠାରୁ ଜାତୀୟ ଲୋକସଂଘର୍ଷକାଳ ବିପ୍ଳବ ଓ ବିଦ୍ରୋହ ମଧ୍ୟ ଭଗବାନଙ୍କର ଇଚ୍ଛା ପୂର୍ଣ୍ଣ ହୁଏ । ଏହି ବିପ୍ଳବ ଫଳରେ ଭଗବାନଙ୍କ ସୃଷ୍ଟି ସୌନ୍ଦର୍ଯ୍ୟ ନୈତିକ ସମ୍ପାଦିତ ହୁଏ ।

ମାନବ-ଇତିହାସର ଅନେକ ଅଦ୍ଭୁତ ବ୍ୟାପାର ଘଟିଥାଏ । ସମାଜ ଓ ଜାତିର ନେତାମାନେ ଗୋଟିଏ ଉଦ୍ଦେଶ୍ୟ ଓ ଗୋଟିଏ ସୀମାବଦ୍ଧ ସଙ୍କୀର୍ଣ୍ଣ ଗଣ୍ଡି ମଧ୍ୟରେ କାର୍ଯ୍ୟ କରନ୍ତି, କିନ୍ତୁ ଫଳ ହୁଏ ସମ୍ପୂର୍ଣ୍ଣ ଭିନ୍ନ ପ୍ରକାର । କୌଣସି ବ୍ୟକ୍ତି ବା ସଂପ୍ରଦାୟ ଗୋଟିଏ ନୂତନ ଧର୍ମ ପ୍ରଚାର ନିମନ୍ତେ ଆନ୍ଦୋଳନ କରୁଅଛନ୍ତି, ଫଳରେ ହୁଏତ ଗୋଟିଏ ଅଭିନବ ରାଷ୍ଟ୍ର ଏବଂ ଏକ ପ୍ରବଳ ସମ୍ଭ୍ରାନ୍ତ ସାମରିକ ଜାତିର ଅଭ୍ୟୁଦୟ ଓ ସୃଷ୍ଟି ହୋଇଅଛି । କୌଣସି ଏକ ରାଜ୍ୟର ସିଂହାସନ ଶୂନ୍ୟ ହେଲା ଅଥବା ତାହାର ଫଳରେ ଉତ୍ତରାଧିକାରମୂଳକ ସଂଗ୍ରାମ ଆରମ୍ଭ ହୋଇ ସମଗ୍ର ଭୂଖଣ୍ଡର

ଗ୍ରୀସ୍ ସୀମାର ଅଦ୍ଭୁତ ପରିବର୍ତ୍ତନ ସାଧନ କଲା *। ସୁତରାଂ ଓ ପ୍ରାରମ୍ଭରେ ଯାହା ଦେଖାଯାଏ, ଅବଶେଷରେ ତାହାର କୌଣସି ଚିହ୍ନ ଲକ୍ଷିତ ହୁଏ ନାହିଁ। ଅନେକ ସମୟରେ ଗୁରୁର ଜୁଲମ ସାଧନ ହେଉଛି ଜନନାୟକମାନଙ୍କର ଆନ୍ଦୋଳନର ଉଦ୍ଦେଶ୍ୟ, କିନ୍ତୁ ଫଳ ହେଉଅଛି ବ୍ୟବସାୟରେ ସଂପ୍ରସାରଣ। ଏହିପରି ଜଗତର ଇତିହାସରେ ଯେ ନାନାପ୍ରକାର ଅଦ୍ଭୁତ ବ୍ୟାପାର ସଂଘଟିତ ହେଉଅଛି, ଏହି ସମସ୍ତ ମୂଳରେ ସେହି ପରମ କାରୁଣିକ ଭଗବାନଙ୍କର ସଦିଚ୍ଛା ନିହିତ ଅଛି। ଏ ଦୃଷ୍ଟିରେ ଦେଖିବାକୁ ଗଲେ ଇତିହାସ ମଧ୍ୟ ଗୋଟିଏ ଧର୍ମ ଓ ନୀତିଶାସ୍ତ୍ର। ରାଜନୈତିକ ଆନ୍ଦୋଳନ, ପ୍ରଜାଶକ୍ତିର ଅଭ୍ୟୁତ୍ଥାନ, ରାଜା ବା ସାମ୍ରାଜ୍ୟର ବିନାଶ, ବିଜ୍ଞାନର ଉନ୍ନତି, ଧର୍ମର ପୁନଃ ବୃଦ୍ଧି, ତଥା ଅଜ୍ଞାନ, ଅନ୍ଧକାର, ଅଧର୍ମ, ଅତ୍ୟାଚାର, ଦାରିଦ୍ର୍ୟ ଓ ଦୁର୍ଭିକ୍ଷ, ପ୍ରଜାପୀଡ଼ନ ଓ ରାଜ୍ୟଧ୍ୱଂସ ଇତ୍ୟାଦିର କାହାଣୀ ଯେଉଁ ଇତିହାସର ଅଙ୍ଗୀଭୂତ ତାହା ଏକ ପ୍ରକାର ନୀତି ବା ଧର୍ମଶାସ୍ତ୍ର। ଏ ସମସ୍ତ ବ୍ୟାପାରରେ ଭଗବାନଙ୍କର ଦୃଢ଼ ଇଙ୍ଗିତ ସ୍ପଷ୍ଟ ଅନୁଭୂତ ହୁଏ।

ବାସ୍ତବିକ ଯେଉଁ ଇତିହାସରେ ଭଗବତ୍ ପ୍ରେରଣାର ଉଲ୍ଲେଖ ନାହିଁ, ଯେଉଁ ଇତିହାସରେ ଐଶୀ ଶକ୍ତିର ବିଜୟ ଦୁନ୍ଦୁଭି ନିର୍ଘୋଷିତ ହୋଇନାହିଁ, ସମାଜର ଉନ୍ନତି ଓ ବିନାଶର ଯେଉଁ ବିବରଣୀ ପଢ଼ିଲେ ଈଶ୍ୱରଙ୍କର ମଙ୍ଗଳମୟ ଉଦ୍ଦେଶ୍ୟ ପ୍ରତି ମନ ଆକୃଷ୍ଟ ହୁଏ ନାହିଁ, ଯେଉଁ ଇତିହାସ ପଢ଼ିଲେ ଅବିନାଶୀ ଆତ୍ମାର ଉତ୍କର୍ଷ ସାଧନ ଦ୍ୱାରା ଭଗବାନଙ୍କ ସହିତ ଯୋଗ ସ୍ଥାପନ କରିବା ନିମିତ୍ତ ଚିତ୍ତ ଅଧୀର ଓ ବ୍ୟାକୁଳ ହୋଇ ନ ଉଠେ, ସେହି ଆଖ୍ୟାୟିକା

---

* B. K, Sarkar's "The Science of History and the Hope of Mankind" pp, 4-5

କେବଳ ମାତ୍ର ରକ୍ତପାତ, ଦ୍ୱନ୍ଦ୍ୱ ଓ କଳହ, ଯୁଦ୍ଧ ଓ ଶାନ୍ତି, ଅନ୍ତର୍ବିପ୍ଳବ ଓ ବୈଦେଶିକ ଆକ୍ରମଣ, ରାଜ୍ୟଲିପ୍ସା ଓ ସମ୍ପଦଲୋଭ ପ୍ରଭୃତି କୁସଂସ୍କାରପୂର୍ଣ୍ଣ ବାହ୍ୟାଡମ୍ବରର ଶୁଷ୍କ ପ୍ରାଣହୀନ ଅନ୍ତଃସାରଶୂନ୍ୟ ବିବରଣ ମାତ୍ର* । ସେହି ଇତିହାସରେ ମନୁଷ୍ୟର ଆତ୍ମାର କଥା ନାହିଁ । ମନୁଷ୍ୟ ହୃଦୟର ଉଲ୍ଲେଖ ନାହିଁ, ମନୁଷ୍ୟ ସଙ୍ଗେ ଭଗବାନଙ୍କ ସମ୍ବନ୍ଧରେ କୌଣସି ମାତ୍ର ଚିହ୍ନ ନାହିଁ, ମନୁଷ୍ୟର ଗନ୍ତବ୍ୟ ସ୍ଥାନ କେଉଁଠାରେ, କି ଉପାୟରେ କେଉଁ ଦିନରେ ତାହାର ଜୀବନର ଲକ୍ଷ୍ୟ ସାଧିତ ହେବ—ଏହାର ସ୍ପଷ୍ଟ ସୂଚନା ଯେଉଁ ଇତିହାସରେ ନାହିଁ, ତାହା ନିର୍ଜୀବ, ଶୁଷ୍କ ଏବଂ ଦୁର୍ଗନ୍ଧମୟ ବିବରଣ ମାତ୍ର । ନର-ସମାଜର କ୍ରମୋନ୍ନତିର ଉପଦେଷ୍ଟା କେବଳ ଇତିହାସବିଜ୍ଞାନ । ପ୍ରକୃତ ଇତିହାସର ପ୍ରତି ପର୍ଯ୍ୟାୟରେ ଜାତି ସଙ୍ଗେ ଜାତିର ପ୍ରତ୍ୟେକ ଆଦାନ ପ୍ରଦାନରେ, ପ୍ରତ୍ୟେକ ବୈଜ୍ଞାନିକ ଓ ଭୌଗୋଳିକ ଆବିଷ୍କାରରେ ଏବଂ ପ୍ରତ୍ୟେକ ସ୍ୱାଧୀନତାର ଆନ୍ଦୋଳନରେ 'ଅସତୋ ମା ସଦ୍‌ଗମୟ ତମସୋ ମା ଜ୍ୟୋତିର୍ଗମୟ' ଶ୍ରୁତିର ଏହି ବଚନ କାର୍ଯ୍ୟରେ ପରିଣତ ହୋଇଅଛି ଓ 'ଯତୋଧର୍ମ୍ମ ସ୍ତତୋଜୟ'ର ଗୀତ ଜଗତରେ ଉଦ୍‌ଘୋଷିତ ହୋଇଅଛି ବୋଲି ବିଶ୍ୱାସମୂଳକ ଏହି ଇତିହାସ ମହାନାଟକର ଧର୍ମ ତନ୍ତ୍ରର ଏକ ଅଂଶ ।

ଜଗତର କର୍ମକ୍ଷେତ୍ରରେ ଇତିହାସ ପ୍ରସିଦ୍ଧ ଯେଉଁ ଦୁଇ ଚାରି ଜଣ ଅଲୌକିକ କ୍ଷମତାଶାଳୀ ବ୍ୟକ୍ତି ଅଧର୍ମ ଓ ଅନ୍ୟାୟର ବିନାଶ ସାଧନ କରି ଧର୍ମ ଓ ଜ୍ଞାନର ଗୌରବ ପ୍ରତିଷ୍ଠା କରି ଯାଇ ଅଛନ୍ତି, ସେମାନେ ଈଶ୍ୱରଙ୍କର ଅବତାର । ସେମାନେ ଐଶୀ ଶକ୍ତି ନେଇ ଏ ଜଗତରୁ ଅନ୍ଧକାର ଦୂର କରିବା ନିମନ୍ତେ ଜନ୍ମ ହୋଇଥାନ୍ତି । ସେହିମାନଙ୍କୁ ଆମ୍ଭେମାନେ 'ମହାପୁରୁଷ' ବୋଲି

* ବିନୟକୁମାର ସରକାର "ଐତିହାସିକ ପ୍ରବନ୍ଧ" ୭—୭

ପୂଜା କରନ୍ତି । ଯୀଶୁ, ମହମ୍ମଦ, ବୁଦ୍ଧଦେବ, ଶଙ୍କର, ଚୈତନ୍ୟ ଓ ନାନକ ଏହି ଶ୍ରେଣୀର ମହାପୁରୁଷ । ଏହି ପ୍ରତ୍ୟେକ ମହାପୁରୁଷ ଗୋଟିଏ ଗୋଟିଏ ମହାବୀର । ଅସତ୍ୟର ଧ୍ୱଂସ ସାଧନ କରି ସତ୍ୟ ପ୍ରତିଷ୍ଠା କରିବା ନିମନ୍ତେ ସେମାନେ ଏ ଜଗତକୁ ପ୍ରେରିତ । ଯେତେବେଳେ ସମସ୍ତ ଜାତିର ଚରିତ୍ର ଅବସାଦ, ଅହଂକାର, ନାସ୍ତିକତା ଏବଂ ଅସାର ପାର୍ଥିବ ସୁଖସ୍ପୃହା ଦିଗରେ ଧାବିତ ହୁଏ, ଯେତେବେଳେ ଅଧର୍ମ, ଅନୀତି, ଅବିଦ୍ୟା ଓ ମୋହରେ ଜାତି ଆଚ୍ଛନ୍ନ ହୁଏ, ଯେତେବେଳେ 'ଧର୍ମସ୍ୟ ଗ୍ଲାନିଃ' ଓ 'ଅଭ୍ୟୁତ୍ଥାନମ-ଧର୍ମସ୍ୟ' ହୁଏ, ସମାଜ ବିଶୃଙ୍ଖଳ ହୁଏ, ଯେତେବେଳେ କେବଳ ଦୁଷ୍ଟର ପାଳନ ଏବଂ ଶିଷ୍ଟର ଦମନ ସମାଜର ନୀତି ହୁଏ, ସବଳ ଅତ୍ୟାଚାର ଓ ଅନ୍ୟାୟରେ ଲୋକମାନେ ନିଷ୍ପେଷିତ, ନିର୍ଯାତିତ ଓ ଉତ୍ପୀଡ଼ିତ ହୁଅନ୍ତି, ସେତିକିବେଳେ ଏହି ସାମାଜିକ, ରାଜନୈତିକ ଓ ଧର୍ମ-ବିପ୍ଳବ ସମୟରେ ଯେଉଁ ଜଣେ ଦୁଇଜଣ କାଣ୍ଡାରୀ ଆବିର୍ଭୂତ ହୋଇ ଦେଶ-ତରଣୀକୁ ସୁନ୍ଦର ସତ୍ୟ ପଥରେ ଚାଳିତ କରିବାକୁ ସମର୍ଥ ହୁଅନ୍ତି, ସେହିମାନଙ୍କୁ ବିଶେଷ ଭାବରେ ଆମ୍ଭେମାନେ ବୀର, ମହାପୁରୁଷ ବା ଯଶଜନ୍ମା ବ୍ୟକ୍ତି ବୋଲି ପୂଜା କରୁ । ସେହିମାନଙ୍କ ମଧ୍ୟରେ ଭଗବାନଙ୍କର ଶକ୍ତି ବିଶେଷ ଭାବରେ ବିଦ୍ୟମାନ । ସେହିମାନେହିଁ ବିଶ୍ୱନିୟନ୍ତାଙ୍କର ପ୍ରକୃତ ପ୍ରିୟଜନ । ସେହିମାନେ କର୍ମ, ଶକ୍ତି ଓ ପ୍ରେମ ଦ୍ୱାରା ବିପ୍ଳବ, ଅଶାନ୍ତି ଓ ବିଶୃଙ୍ଖଳା ମଧ୍ୟରେ ଶାନ୍ତି, ଶୃଙ୍ଖଳା ଓ ଭକ୍ତି ସାହାଯ୍ୟରେ ଅତୀତର ରାଜ୍ୟ ଧ୍ୱଂସ କରି ଦେବତାର ରାଜ୍ୟ ନିର୍ମାଣ କରନ୍ତି, ଖଣ୍ଡ ସତ୍ୟର ପରିବର୍ତ୍ତରେ ମହା-ସତ୍ୟ ଆବିଷ୍କାର କରନ୍ତି, କ୍ଷୁଦ୍ର, ସ୍ୱାର୍ଥ ଓ ନୀଚ ସଙ୍କୀର୍ଣ୍ଣତାକୁ ପାଦରେ ଦଳିଦେଇ ନୂତନ ଜାତୀୟତାର ସୃଷ୍ଟି କରନ୍ତି । ସେଥିପାଇଁ ଭକ୍ତକବି ଗାଇଅଛନ୍ତି—

"ତୁ ଯେବେ ନୋହନ୍ତୁ ଜଗତେ
ଅଜ୍ଞାନ ନାଶିବୁ କେମନ୍ତେ
ଯେ ତୋତେ ସେମନ୍ତ ଚାହାଇ
ଗୁଣ ପ୍ରକାଶ ଦେହ ବହି ।"*

ସୁତରାଂ ବୀରର ଜୀବନୀ ମଧ୍ୟ ଜାତୀୟ ଇତିହାସ । କାରଣ ଦେଶରେ ସମସ୍ତ ବୀର ଓ ମହାପୁରୁଷମାନଙ୍କର କାର୍ଯ୍ୟ, ଚେଷ୍ଟା ଓ ଆଦର୍ଶରେ ଯୋଗ କଲେ ଅନାୟାସରେ ବୀରପ୍ରସୂ ଜାତିର ସମସ୍ତ କାର୍ଯ୍ୟ-କଳାପର ବିବରଣୀ ଆମ୍ଭମାନଙ୍କର ହସ୍ତଗତ ହୁଏ । ବୀରମାନଙ୍କର ଜୀବନୀ ପାଠ କଲେ ସମସାମୟିକ ଜନ-ସାଧାରଣଙ୍କ ଅବସ୍ଥା ସମ୍ବନ୍ଧରେ ବହୁତ ତତ୍ତ୍ୱ ମିଳେ । ସୁତରାଂ ବୀର ଓ ମହାପୁରୁଷମାନଙ୍କର ଜୀବନୀ ଯେ ଇତିହାସର ପ୍ରଧାନ ଅଙ୍ଗ ଏହା ବୋଧେ ସମସ୍ତଙ୍କର ମନେ ରଖିବା ଉଚିତ । ଜାତିର ଭଗ୍ନ ବଂଶଧର ଓ ଜନନାୟକ ସ୍ଥବିରସମାଜର ବୀରଜୀବନୀ ଏକାନ୍ତ ସତ୍ୟ । ତୁଲ୍ୟମୂଲ୍ୟର ବ୍ୟତିକ୍ରମ ଘଟିଲେ ଜାତିର ଅଧଃପତନ ଓ ଧ୍ୱଂସ ଦୃଷ୍ଟ ହୁଏ ।†

ଏଠାରେ ପ୍ରଶ୍ନ ହୋଇପାରେ ଇତିହାସ କି କେବଳ ବ୍ୟକ୍ତି-ବିଶେଷର ଜୀବନ ନେଇ ? ଇତିହାସରେ କି ନିରୀହ ଦୁର୍ବଳ ପ୍ରଜା ସାଧାରଣଙ୍କର କୌଣସି ସ୍ଥାନ ନାହିଁ ? ଏଠାରେ ଏତିକି କହିଲେ ଯଥେଷ୍ଟ ହେବ ଯେ ଇତିହାସ ଜାତୀୟ ଜୀବନର ବିଶଦ ବିବରଣ । ବ୍ୟକ୍ତିର ସମଷ୍ଟିହିଁ ଜାତି । ସେଥିପାଇଁ ଇତିହାସ କେବଳ କୌଣସି ବ୍ୟକ୍ତି ବିଶେଷର ଜୀବନଚରିତ ନୁହେଁ । ଜଣଙ୍କୁ ନେଇ ଇତିହାସ

* ଭାଗବତ ୧୦ମ ସ୍କନ୍ଧ ୭ମ ଅଧ୍ୟାୟ ।

† New Orissa ( May 12, 1936 ) ରେ ପ୍ରକାଶିତ ମୋର "Historical Persons of Ancient Utkal" ପ୍ରବନ୍ଧ ଦ୍ରଷ୍ଟବ୍ୟ ।

ସୃଷ୍ଟି ହେବା ଅସମ୍ଭବ । ସେଥି ସକାଶେ ପ୍ରଜା ଇତିହାସର ପ୍ରଧାନ ବିଷୟ—ରାଜା ନୁହନ୍ତି । ସିରାଜୁଦ୍ଦୌଲା ଅତ୍ୟାଚାରୀ ଥିଲେ କି ନାହିଁ, ଆରଙ୍ଗଜେବ୍ ସ୍ୱୟଂ ମଦ୍ୟପାନ କରୁଥିଲେ କି ନାହିଁ—ଏହା ଅପେକ୍ଷା ସିରାଜୁଦ୍ଦୌଲାଙ୍କ ସମୟରେ ପ୍ରଜା ସାଧାରଣର ଅବସ୍ଥା କିପରି ଥିଲା, ଆରଙ୍ଗଜେବଙ୍କ ସମୟରେ ଜନସମାଜରେ ମଦ୍ୟପାନ ପ୍ରଚଳିତ ଥିଲା କି ନାହିଁ, ଏହି ସମସ୍ତ ପ୍ରଶ୍ନର ଐତିହାସିକ ମୂଲ୍ୟ ଅଧିକ । ସାଧାରଣତଃ ପ୍ରଜାମାନେ ଇତିହାସର ବିଷୟ । କିନ୍ତୁ ଯେଉଁଠାରେ ରାଜାଙ୍କ ପ୍ରଜାର ସାହାଯ୍ୟ କିମ୍ବା ସଂଘର୍ଷରେ ନୂତନ ସ୍ରୋତ ପ୍ରବାହିତ ହୋଇଅଛି, ଯେଉଁଠାରେ ରାଜାର ଶାସନନୀତି ଫଳରେ ପ୍ରଜାର ଜାତୀୟ ଜୀବନରେ ଉନ୍ନତି ବା ଅବନତିର ସୂତ୍ରପାତ ହୋଇଅଛି, ଯେଉଁଠାରେ ରାଜାର ଅଜ୍ଞାତରେ ପ୍ରଜାର ବାଣିଜ୍ୟ ସଂପର୍କରେ କିମ୍ବା ପ୍ରଜାସାଧାରଣ ମଧ୍ୟରେ ଜ୍ଞାନ ବିସ୍ତାର ସମ୍ବନ୍ଧରେ କୌଣସି ବିଶେଷ ପରିବର୍ତ୍ତନ ସଂଘଟିତ ହୋଇଅଛି—ସେହିଠାରେ ରାଜାର ଶାସନନୀତି ସମାଲୋଚ୍ୟ । ସୁତରାଂ ସେହିଠାରେ ରାଜା ଇତିହାସର ବିଷୟ । ଆରଙ୍ଗଜେବଙ୍କର ହିନ୍ଦୁ ବିଦ୍ୱେଷର ଅନୁକୂଳ ପବନ ନ ପାଇଥିଲେ ମହାରାଷ୍ଟ୍ରୀୟମାନଙ୍କର ଜାତୀୟ ଉନ୍ନତିର ତରଣୀ ଏତେ ଶୀଘ୍ର ଅଗ୍ରସର ହୋଇପାରିଥାନ୍ତା କି ନାହିଁ ସନ୍ଦେହ । ସୁତରାଂ ଆରଙ୍ଗଜେବଙ୍କର ଶାସନନୀତି ଇତିହାସର ବିଷୟ । ଆରଙ୍ଗଜେବ୍ ଇତିହାସର ବିଷୟୀଭୂତ ।*

କେବଳ ନିଜ ପ୍ରଦେଶରେ ଇତିହାସ ଲେଖିଲେ, ନିଜର ଅତୀତ ଗୌରବରେ ଗୌରବାନ୍ୱିତ ହେଲେ ଚଳିବ ନାହିଁ । ସେହି ବିଶ୍ୱନିୟନ୍ତାଙ୍କର ଅସୀମ ଅନନ୍ତ ଶକ୍ତିର ପରିଚୟ ପାଇବାକୁ ହେଲେ କେତେ ଯୁଗଯୁଗାନ୍ତରର ସୃଷ୍ଟି ଦେଖିବାକୁ ହେବ, କେତେ

* "ମୁକୁର" ୫ମ ବର୍ଷ ୧୧ଶ ସଂଖ୍ୟା ୧୦୩୦-୧୦୩୧

ଶ୍ୱର ଧ୍ୱଂସ ଓ ଲୟ ଦେଖିବାକୁ ହେବ, କେବେ ଜାତିର ଉତ୍ଥାନ ଓ ପତନ ଦେଖିବାକୁ ହେବ; ତେବେ ଯାଇ ଜାତି ଓ ସମାଜର ହୃଦୟ ପ୍ରଶସ୍ତ ଓ ଉଦାର ହେବ ଏବଂ ଜାତିର ଭବିଷ୍ୟତ କଲ୍ୟାଣର ଉପାୟ ନିର୍ଦ୍ଧାରିତ ହୋଇ ପାରିବ । କେବଳ ଗୋଟିଏ ପ୍ରଦେଶର ସଙ୍କୀର୍ଣ୍ଣ ଗଣ୍ଡି ମଧ୍ୟରେ ଆବଦ୍ଧ ରହିଲେ ଚଳିବ ନାହିଁ ।

---

## ମୈତ୍ରେୟୀ ବନ

ସମଗ୍ର ଭାରତବର୍ଷ ମଧ୍ୟରେ ଉତ୍କଳ ହିନ୍ଦୁମାନଙ୍କର ପରମ ପବିତ୍ର ଭୂମି । ନାନା ଦେବଦେବୀ ଓ ତୀର୍ଥମାନଙ୍କର ଅଧିଷ୍ଠାନ ଯୋଗେ ପ୍ରାଚୀନ ମହର୍ଷିମାନେ ଉତ୍କଳକୁ ଭାରତୀୟ ଧର୍ମ-ରାମାୟଣରେ ଉଚ୍ଚ ଉଚ୍ଚସ୍ଥାନ ଦେଇଅଛନ୍ତି । ଉତ୍କଳର ମାହାତ୍ମ୍ୟ ଓ ପବିତ୍ରତାର ବର୍ଣ୍ଣନା ଅନେକ ପୁରାଣରେ ଦେଖାଯାଏ । ଓଡ଼ିଶାର ପ୍ରତ୍ୟେକ ଧୂଳିକଣାରେ ଧର୍ମଭାବ ଓ ପବିତ୍ରତା ପୂରି ରହିଅଛି—ଏ କଥା ଏବେ ସୁଦ୍ଧା ଭାରତର ହିନ୍ଦୁମାନଙ୍କ ମନକୁ ଅନୁପ୍ରାଣିତ କରେ । ମରହଟ୍ଟାର ମହାତ୍ମା ଶିବାଜୀ ଏକାନ୍ତ କାନନରେ ଜନ୍ମିତ ହୋଇ କହିଥିଲେ—"ଏହି ଦେଶ ଦେବତାମାନଙ୍କର ପ୍ରିୟ ନିକେତନ, ପାପପ୍ରବଣ ମନୁଷ୍ୟ ଏହି ପବିତ୍ର ଭୂମିକୁ କଳଙ୍କିତ କରିବା ଅନୁଚିତ ।" * ହିନ୍ଦୁମାନଙ୍କର ଗୋଟିଏ ପରମ ପବିତ୍ର ସ୍ଥଳୀ ବୋଲି ଓଡ଼ିଶା ପାଶ୍ଚାତ୍ୟ ଜଗତରେ ମଧ୍ୟ ସୁବିଦିତ । ବର୍ତ୍ତମାନ ଶସ୍ୟଶ୍ୟାମଳ କ୍ଷେତ୍ର ପ୍ରାନ୍ତର, ସୁନୀଳ ଅନନ୍ତ ନୀଳ ପାରାବାର, ଗଗନସ୍ପର୍ଶୀ କାରୁକାର୍ଯ୍ୟ ମଣ୍ଡିତ ଦେବମନ୍ଦିର ଓ କମନୀୟ ପ୍ରାଣସ୍ପର୍ଶୀ

---

*Encyclopaedia Britannica, article on 'Orissa' "The whole of Orissa is a holy ground."

ପ୍ରାକୃତିକ ସୌନ୍ଦର୍ଯ୍ୟ ଉତ୍କଳଭୂମିକୁ ଏତେ ଗୌରବଶାଳିନୀ କରିଥିଲା ଯେ ଭାରତରେ ଯେତେବେଳେ ଯେଉଁ ଧର୍ମର ଆବିର୍ଭାବ ଓ ଅଭ୍ୟୁଦୟ ହେଉଥିଲା, ସେ ସମସ୍ତ ଉତ୍କଳକୁ ନିଜ ନିଜର ପ୍ରଧାନ ପୀଠରୂପେ ପରିଣତ କରୁଥିଲେ ।

ଉତ୍କଳର ପୁଣ୍ୟକ୍ଷେତ୍ରମାନଙ୍କ ମଧ୍ୟରେ କୋଣାର୍କ ଅନ୍ୟତମ । ଆଜି ସେହି ଜଗତ-ପ୍ରସିଦ୍ଧ କୋଣାର୍କ କ୍ଷେତ୍ର ବାଲୁକାମୟ ନିର୍ଜନ ମରୁ ପ୍ରାନ୍ତରରେ ପରିଣତ ହୋଇଅଛି । ଯେଉଁ ଧବଳ ଧୂଳି ଶତ ସହସ୍ର ଲୋକଙ୍କର ସମାବେଶରେ, ପୂଜା-ପାଠ ଓ ସ୍ତୋତ୍ରଗାନରେ ଅବିରତ ମୁଖରିତ ହେଉଥିଲା ସେହି ସ୍ଥାନ ଏବେ ବିଜନ ମରୁ ପ୍ରାନ୍ତର ! କେବଳ ଜଗମୋହନ ଓ ପତନୋନ୍ମୁଖ ନୃତ୍ୟଶାଳା ବ୍ୟତୀତ କୋଣାର୍କର ଅନ୍ୟ ସମସ୍ତ ବିଭବ ଚିରକାଳ ନିମନ୍ତେ ଅସ୍ତମିତ ହୋଇଅଛି । ବହୁକାଳ ହେଲା କୋଣାର୍କ ଧର୍ମପ୍ରାଣ, ମୁକ୍ତିପିପାସୁ ହିନ୍ଦୁଯାତ୍ରୀମାନଙ୍କର ସମାଗମରୁ ବଞ୍ଚିତ ହୋଇଅଛି । ତଥାପି ଭାରତର ଅନ୍ୟାନ୍ୟ ପୁଣ୍ୟକ୍ଷେତ୍ରମାନଙ୍କ ପରି କୋଣାର୍କ ଏବେ ସୁଦ୍ଧା ଏକ ପ୍ରଧାନ ମୁକ୍ତି-କ୍ଷେତ୍ର ରୂପେ ପରିଗଣିତ ହୋଇ ଆସୁଅଛି ।

ପୁରାଣକାରମାନେ କୋଣାର୍କକୁ ନାନା ଆଖ୍ୟାରେ ଅଭିହିତ କରିଅଛନ୍ତି । ବ୍ରହ୍ମପୁରାଣ ଏହାକୁ 'କୋଣାଦିତ୍ୟ' ଏବଂ ସ୍କନ୍ଦପୁରାଣ 'ସୂର୍ଯ୍ୟକ୍ଷେତ୍ର' ବୋଲି ବର୍ଣ୍ଣନା କରିଅଛନ୍ତି । ପ୍ରାଚୀମାହାତ୍ମ୍ୟରେ ଏହା 'ଅର୍କକ୍ଷେତ୍ର' ନାମରେ ପରିଚିତ । ଭବିଷ୍ୟପୁରାଣ 'ମିତ୍ରବନ', ଶାମ୍ବପୁରାଣ 'ମୈତ୍ରବନ' ଏବଂ କପିଳସଂହିତା 'ରବିକ୍ଷେତ୍ର' ବା 'ମୈତ୍ରେୟବନ' ଆଖ୍ୟାରେ ଏହାକୁ ଅଭିହିତ କରିଅଛନ୍ତି । ଏହି ନାନାବିଧ ଆଖ୍ୟା ମଧ୍ୟରେ 'ମିତ୍ରବନ' 'ମୈତ୍ରବନ' ବା 'ମୈତ୍ରେୟବନ' ବର୍ତ୍ତମାନ କୋଣାର୍କ ସମ୍ବନ୍ଧରେ ଆଉ ସାଧାରଣତଃ ଶୁଣାଯାଏ ନାହିଁ । ସୁତରାଂ, ଏହା ସ୍ଥିର ଯେ ବର୍ତ୍ତମାନ ପ୍ରଚଳିତ

'ରବିକ୍ଷେତ୍ର' 'ଅର୍କକ୍ଷେତ୍ର' 'ସୂର୍ଯ୍ୟକ୍ଷେତ୍ର' ପ୍ରଭୃତି ଆଖ୍ୟାରେ ଅଭିହିତ ହେବା ପୂର୍ବରୁ କୋଣାର୍କ 'ମୈତ୍ରେୟବନ' ନାମରେ ପ୍ରସିଦ୍ଧ ଥିଲା । ପୌରାଣିକ ସଂହିତାରେ ଉଲ୍ଲେଖ ଅଛି 'ମୈତ୍ରେୟ-ତପସ୍ୟାର୍ଜିତଂ' ଅର୍ଥାତ ମୈତ୍ରେୟ ତପସ୍ୱୀଙ୍କର ତପସ୍ୟା ପ୍ରଭାବରେ ସ୍ଥାନର ଉତ୍ପତ୍ତି ହୋଇଥିବାରୁ ଏହାପରି ନାମକରଣ ହୋଇଥିଲା । ପରେ ସୂର୍ଯ୍ୟଙ୍କ ସହିତ ଏହାର ସମ୍ବନ୍ଧ ହେବାରୁ ଏହା 'ମିତ୍ରବନ' ବା 'ମୈତ୍ରବନ' ନାମରେ ପରିଚିତ ହେଲା ।* ସୂର୍ଯ୍ୟଙ୍କର ନାମ ମିତ୍ର ଅଟନ୍ତି ମିତ୍ର ବା ସୂର୍ଯ୍ୟଙ୍କର ପ୍ରିୟ ହେବ ହୋଇଥିବାରୁ ସ୍ଥାନର ନାମ ମିତ୍ର, ମୈତ୍ର ବା ମୈତ୍ରେୟ ବନ ହୋଇଥିବାର ବିଶ୍ୱାସ କରାଯାଏ ।

ସୂର୍ଯ୍ୟଙ୍କ ସହିତ ଯେ ଏହି ବନର ନିବିଡ଼ ସମ୍ବନ୍ଧ ଥିଲା ଏହା ଶାମ୍ବପୁରାଣର ଗୋଟିଏ ପୌରାଣିକ ଘଟଣାରୁ ସ୍ପଷ୍ଟ ଅନୁମିତ ହୁଏ ।† ଶାମ୍ବ ଜାମ୍ବବତୀଙ୍କ ଗର୍ଭରେ କୃଷ୍ଣଙ୍କର ପୁତ୍ର ଅସାଧାରଣ ରୂପ ଲାବଣ୍ୟରେ ସେ ଯେତେବେଳେ ଲୋକମାନଙ୍କୁ ମୁଗ୍ଧ କରି ଦେଉଥିଲେ ତାଙ୍କର ଅସୀମ ଗର୍ବ, ଅହଂକାର ଓ ଦର୍ପରେ ମଧ୍ୟ ଲୋକେ ସେପରି ଜୁଗୁପ୍ସା ହେଉଥିଲେ । ଶାମ୍ବ ନାରଦଙ୍କୁ ଉପହାସରେ ଉଡ଼ାଇ ଦେଉଥିଲେ । ନାରଦ କ୍ରୋଧରେ ହତବୁଦ୍ଧି ହୋଇ ଦିନେ କୃଷ୍ଣଙ୍କୁ କହିଲେ, "ତୁମ୍ଭର ଷୋଳହଜାର ଗୋପନାରୀଙ୍କ ସଙ୍ଗେ ଶାମ୍ବଙ୍କର ପାପ-ପ୍ରଣୟ ଅଛି ।" ଏ କଥାରେ କୃଷ୍ଣଙ୍କର ବିଶ୍ୱାସ ହେଲା ନାହିଁ; କାରଣ ଶାମ୍ବଙ୍କର ବୟସ ଅତି ଅଳ୍ପ ଏବଂ ତାଙ୍କର

---

* ୰କୃପାସିନ୍ଧୁ ମିଶ୍ର 'କୋଣାର୍କ' ପୃ ୨-୩

† 3—Dr. R. Mitra "Antiquities of Orissa" Vol. II pp. 145-146.

ଚରିତ୍ର ନିଷ୍କଳଙ୍କ ଥିଲା । ବାମାଳାମାନଙ୍କ ସହିତ ପାପ-ପ୍ରଶ୍ରୟ ଲଭିବା ଶାମ୍ବଙ୍କ ପକ୍ଷରେ ଅସମ୍ଭବ । ନାରଦଙ୍କର ଅଭିଳାଷ ଅପୂର୍ଣ୍ଣ ରହିଲା; ସୁତରାଂ ସେ ପ୍ରତିଜ୍ଞା କଲେ ଦିନେ କୃଷ୍ଣଙ୍କୁ ସେ ଏ ଘଟଣାଟି ସ୍ପଷ୍ଟରୂପେ ଦେଖାଇଦେବେ । ଥରେ ନାରଦଙ୍କ କୁମନ୍ତ୍ରଣାରେ ଶାମ୍ବ ରୈବତକ ପର୍ବତକୁ ଗଲେ । କୃଷ୍ଣ ଅନ୍ତଃପୁରରେ ଥିଲେ । ସେହି ରୈବତକ ପର୍ବତରେ ଗୋଟିଏ ପୋଖରୀରେ ଜଳକେଳି କରୁଥିବା ବେଳେ ଶାମ୍ବଙ୍କର ଅପୂର୍ବ ରୂପ ଲାବଣ୍ୟ ଦେଖି ଗୋପ-ବାଳାମାନେ ମୁଗ୍ଧ ହୋଇଗଲେ । ନାରଦ ଉଚିତ ସମୟରେ କୃଷ୍ଣଙ୍କ ନିକଟକୁ ଯାଇ ଗୋପୀମାନଙ୍କ ମଧ୍ୟରେ ଶାମ୍ବଙ୍କୁ ଦେଖାଇଦେଲେ । କୃଷ୍ଣଙ୍କ ହୃଦୟ ରାଗରେ ଅଧୀର ହୋଇ ଉଠିଲା । ସେ ଶାମ୍ବଙ୍କୁ ଶାପ ଦେଲେ, "କୁଷ୍ଠ ବ୍ୟାଧି ତୋର ସୁନ୍ଦର ଯୌବନଶ୍ରୀ ଲୁପ୍ତ ହେଉ ।" ଏ ଅଭିଶାପର ଆଉ ପ୍ରତ୍ୟାହାର ହେଲା ନାହିଁ । ନାରଦଙ୍କ ଉପଦେଶ ଅନୁସାରେ ଏହି କଠିନ ରୋଗରୁ ମୁକ୍ତ ହେବା ନିମନ୍ତେ ଶାମ୍ବ ମୈତ୍ରେୟବନରେ ବାର ବର୍ଷ ପର୍ଯ୍ୟନ୍ତ ତପସ୍ୟା କରିବାକୁ ପ୍ରସ୍ଥାନ କଲେ ।

ଚନ୍ଦ୍ରଭାଗା ନଦୀକୂଳବର୍ତ୍ତୀ ସୁରମ୍ୟ ମୈତ୍ରେୟ ବନରେ ପ୍ରବେଶ କରି ଶାମ୍ବ କଠୋର ତପସ୍ୟା ଆରମ୍ଭ କଲେ । ବାର ବର୍ଷ ପର୍ଯ୍ୟନ୍ତ ସେ ସେଠାରେ ସୂର୍ଯ୍ୟଙ୍କର ଆରାଧନା କଲେ । ବାର ବର୍ଷ ତପସ୍ୟାପରେ ସୂର୍ଯ୍ୟ ଶାମ୍ବଙ୍କ ଉପରେ ଅତୀବ ପ୍ରସନ୍ନ ହୋଇ ତାଙ୍କ ସମ୍ମୁଖରେ ଉପସ୍ଥିତ ହେଲେ ଏବଂ କହିଲେ, "ତୁମ୍ଭର ବ୍ରତରେ ମୁଁ ଅତିଶୟ ପ୍ରୀତ ହେଲି । କି ବର ମାଗୁଛ ମାଗ ।" ଶାମ୍ବ ପ୍ରାର୍ଥନା କଲେ, "ତୁମ୍ଭର ପ୍ରସାଦରୁ ମୁଁ ଏ ରୋଗରୁ ମୁକ୍ତ ହୁଏ ।" ତତ୍‌କ୍ଷଣାତ୍ ଶାମ୍ବ ପୂର୍ବ ରୂପଲାବଣ୍ୟ ଲାଭ କଲେ । ସୂର୍ଯ୍ୟ ଶାମ୍ବଙ୍କୁ କହିଲେ, "ଆଜିଠାରୁ ସେ ତମ ନାମରେ ମର୍ତ୍ତ୍ୟରେ ମନ୍ଦିର ନିର୍ମାଣ କର

ଯେଉଁ ସ୍ଥାପନ କରିବ, ସେ ସନାତନ ଲୋକ ପ୍ରାପ୍ତ ହେବ ।" ଶାମ୍ବ ସୂର୍ଯ୍ୟଙ୍କ ଆଦେଶ ପାଳନରେ ସ୍ଥିରସଂକଳ୍ପ ହେଲେ । ପରଦିନ ପ୍ରାତଃକାଳରେ ଚନ୍ଦ୍ରଭାଗା ନଦୀରେ ସ୍ନାନ କରୁ କରୁ ସୂର୍ଯ୍ୟଦେବଙ୍କର ଗୋଟିଏ ପ୍ରସ୍ତର ପ୍ରତିମୂର୍ତ୍ତି ପଦ୍ମାସନରେ ନଦୀର ବିଶୁଦ୍ଧ ଜଳ ମଧ୍ୟରେ ଭାସମାନ ହୋଇଥିବାର ଶାମ୍ବ ଦେଖି ପାରିଲେ । ବିଶ୍ୱକର୍ମା ସୂର୍ଯ୍ୟଙ୍କ ଶରୀରର କେତେକ ଅଂଶରେ ଏହି ବିଗ୍ରହ ଗଠନ କରିଥିଲେ * । ଶାମ୍ବ ମୈତ୍ରେୟବନରେ ଗୋଟିଏ ସୁନ୍ଦର ମନ୍ଦିର ନିର୍ମାଣ କରି ଉକ୍ତ ବିଗ୍ରହଟି ସେଠାରେ ସ୍ଥାପନ କରି ପୂଜା କଲେ ।

ଉପରୋକ୍ତ ଶାମ୍ବ ଉପାଖ୍ୟାନରୁ ଜଣାଯାଏ ଯେ ମୈତ୍ରେୟ ବନରେ ନବପ୍ରତିଷ୍ଠିତ ସୂର୍ଯ୍ୟଦେବଙ୍କର ପୂଜା ଆରାଧନା ନିମନ୍ତେ ଶାମ୍ବ କେତେକ ଶାକଦ୍ୱୀପୀ ବ୍ରାହ୍ମଣଙ୍କୁ ସେବକ ସ୍ୱରୂପ ନିଯୁକ୍ତ କରିଥିଲେ† । ଶାକଦ୍ୱୀପକୁ ବର୍ତ୍ତମାନ ଇତିହାସ-ଲେଖକମାନେ ପାରସ୍ୟ ବୋଲି ସ୍ଥିର କରିଅଛନ୍ତି । ସୁପ୍ରସିଦ୍ଧ ଇଂରେଜୀ ଗ୍ରନ୍ଥ 'କୋଣାର୍କ'ର ଲେଖକ ଶ୍ରୀ ବିଷନ ସ୍ୱରୂପ ମଧ୍ୟ କହନ୍ତି ଯେ ସୂର୍ଯ୍ୟଦେବଙ୍କ ସେବକମାନେ ପାରସ୍ୟବାସୀ ଥିଲେ । ଶାକଦ୍ୱୀପ ନାମ ଭାରତର ନାନା ଧର୍ମଶାସ୍ତ୍ରମାନଙ୍କରେ ବହୁତ୍ର ଦେଖିବାକୁ ମିଳେ । ଏଥିରୁ ସ୍ପଷ୍ଟ ଅନୁମିତ ହୁଏ, ଭାରତରେ ଜାତିବନ୍ଧନ ଦୃଢ଼ ଓ କଠୋର ହେବା ପୂର୍ବରୁ ପାରସ୍ୟ ଓ ଭାରତବର୍ଷ ଅବାଧରେ ମିଳାମିଶା କରିପାରୁଥିଲେ ଓ ପାରସ୍ୟବାସୀମାନେ ଭାରତ ସମାଜରେ ସୁନ୍ଦର ମିଶି ପାରୁଥିଲେ । ସେତେବେଳେ ଭାରତୀୟ ଆର୍ଯ୍ୟ ଓ ପାରସ୍ୟ-ବାସୀମାନଙ୍କ ମଧ୍ୟରେ ଏତେଦୂର ଘନିଷ୍ଠ ସମ୍ପର୍କ ଥିଲା ଯେ ଲୋକେ

---

* ୬ କୃପାସିନ୍ଧୁ ମିଶ୍ର—'କୋଣାର୍କ' ପୃ ୭

† Bishan Swarup—Konark P. 4

ତେବେ ଐତିହାସିକ ମୌର୍ଯ୍ୟ ସମ୍ରାଟ ଚନ୍ଦ୍ରଗୁପ୍ତ ଓ ତାଙ୍କର ପ୍ରଧାନ ମନ୍ତ୍ରୀ ଚାଣକ୍ୟଙ୍କୁ ମଧ୍ୟ ପାରସିକ ବୋଲି ମନେ କରନ୍ତି । କେବଳ ସାମାଜିକ ପ୍ରସାରରେ ନୁହେ, ରାଜନୈତିକଭାବରେ ମଧ୍ୟ ପାରସ୍ୟ ସହିତ ଭାରତର ଘନିଷ୍ଠ ସମ୍ବନ୍ଧ ଥିଲା । ଚନ୍ଦ୍ରଗୁପ୍ତଙ୍କ ସମୟରେ ପାରସ୍ୟ ଯେପରି ଗୋଟିଏ ସୀମାନ୍ତ ରାଜ୍ୟ ସ୍ୱରୂପ ଥିଲା ଏବଂ ଚନ୍ଦ୍ରଗୁପ୍ତଙ୍କ ମନ୍ତ୍ରୀ ଚାଣକ୍ୟ ପାରସିକ ରାଜାଙ୍କର ଧ୍ୱଂସରେ ବ୍ୟସ୍ତ ଥିଲେ ଏହା 'ମୁଦ୍ରାରାକ୍ଷସ' ନାଟକରୁ ଜଣାଯାଏ * । ଶକରାଜାଙ୍କ 'ଶକାବ୍ଦ' ବର୍ତ୍ତମାନ ପର୍ଯ୍ୟନ୍ତ ମଧ୍ୟ ସମସ୍ତ ଭାରତବର୍ଷରେ ଚଳୁଅଛି । ଖ୍ରୀଷ୍ଟଙ୍କ ପୂର୍ବରୁ ଶକମାନେ ଶୈବ ଥିଲେ । ସୁତରାଂ କି ସାମାଜିକ, କି ରାଜନୈତିକ ସମସ୍ତ ବିଷୟରେ ପାରସ୍ୟ ଓ ଭାରତବର୍ଷ ମଧ୍ୟରେ ସମ୍ବନ୍ଧ ଘନିଷ୍ଠ ଥିଲା । ଏହି ହେତୁରୁ ଶାମ୍ବ କେତେକ ଶାକଦ୍ୱୀପୀ ବ୍ରାହ୍ମଣମାନଙ୍କୁ ଆଣାଇ ସୂର୍ଯ୍ୟଙ୍କର ସେବକରୂପେ ନିଯୁକ୍ତ କରିଥିଲେ ।

ଯେ ଯାହାହେଉ, ମୈତ୍ରେୟ ବନରେ ପାରସିକ ଶାକଦ୍ୱୀପୀ ବ୍ରାହ୍ମଣମାନଙ୍କର ସୂର୍ଯ୍ୟ ପୂଜା ଓ ସେବା ଉକ୍ତ ବନର ଐତିହାସିକତା ଓ କାଳ ନିର୍ଣ୍ଣୟ କରିବାରେ ବହୁତ ସହାୟତା କରୁଅଛି । ଯେଉଁ ସମୟରେ ଭାରତୀୟ ଆର୍ଯ୍ୟ ଓ ପାରସିକ ଆର୍ଯ୍ୟମାନଙ୍କ ମଧ୍ୟରେ ସାମାଜିକ ବିଚ୍ଛେଦ ଅଧିକ ନ ଥିଲା ଏବଂ ଭାରତୀୟ ଆର୍ଯ୍ୟମାନେ ସେମାନଙ୍କୁ ଘୃଣା ଚକ୍ଷୁରେ ଦେଖି ନାସିକା କୁଞ୍ଚନ କରୁ ନ ଥିଲେ ଏବଂ ଯେତେବେଳେ ପାରସିକ ଆର୍ଯ୍ୟମାନେ ଅବାଧରେ ଓ ଅତ୍ୟନ୍ତ ଆଦରର ସହିତ ଭାରତ ସମାଜର ଅନ୍ତର୍ଭୁକ୍ତ ହୋଇ ପାରୁଥିଲେ, ସେତେବେଳେ ଅର୍ଥାତ୍ ଭାରତରେ ଜାତି-ବନ୍ଧନ ଦୃଢ଼ ହେବା ପୂର୍ବରୁ

---

* ମେଘାକ୍ଷଃ ପଞ୍ଚମେ ମ୍ଲେଚ୍ଛ ପୃଥୁଳବଳଃ ପାରସିକାଧିରାଜୋ ନାମାନ୍ୟେଷାଂ ଲିଖାମି ଧ୍ରୁବମହମଧୁନା ଚିତ୍ରଗୁପ୍ତଃ ପ୍ରମାଷ୍ଟୁ ।
'ମୁଦ୍ରାରାକ୍ଷସ' ୧—୨୦

ଶାକଦ୍ୱୀପୀ ବ୍ରାହ୍ମଣମାନେ ମୈତ୍ରେୟ ବନକୁ ସୂର୍ଯ୍ୟଙ୍କର ସେବାଭାର ଗ୍ରହଣ କରିବାକୁ ଆସିଥିଲେ । ଏହି ଶାକଦ୍ୱୀପୀ ବ୍ରାହ୍ମଣମାନେ ଭାରତ ସମାଜରୁ ପୃଥକ୍ ହୋଇ ରହି ନ ଥିଲେ । ସୁତରାଂ ଭାରତରେ ଜାତିପ୍ରଥା ଯଥେଷ୍ଟ ଶିଥିଳ ଥିଲା । ସେଥିପୂର୍ବରେ ସେମାନେ ଏ ଦେଶକୁ ଆସିଥିଲେ । ବୁଦ୍ଧଦେବଙ୍କ ଜନ୍ମ ତାଙ୍କର ପୂର୍ବ ଜନ୍ମ ସମ୍ବନ୍ଧରୁ ଜାତକ ରଚିତ ହୋଇ ଆସିଥିଲା । ଏପରି ସ୍ଥଳେ ମୈତ୍ରେୟ ବନର ଉପବେଶ ଶାମ୍ବ ଉପାଖ୍ୟାନ ଓ ସେଥିରେ ସୂର୍ଯ୍ୟଦେବଙ୍କ ଅଧିଷ୍ଠାନ ନିମନ୍ତେ ଅସ୍ମମାନଙ୍କୁ ବୁଦ୍ଧଦେବଙ୍କର ବହୁ ଶତାବ୍ଦୀ ପୂର୍ବକୁ ଯିବାକୁ ହେବ ।

ଅନ୍ୟ ପକ୍ଷରୁ ଦେଖିଲେ ମଧ୍ୟ ଉପରୋକ୍ତ ଅନୁମାନ ପ୍ରମାଣିତ ହୁଏ । ଉତ୍କଳର ସୁପ୍ରସିଦ୍ଧ ଐତିହାସିକ, ସତ୍ୟବାଦୀ ସ୍କୁଲର ଅନ୍ୟତମ ନିଃସ୍ୱାର୍ଥପର କର୍ମୀ ଓ ଶିକ୍ଷକ ସ୍ୱର୍ଗୀୟ କୃପାସିନ୍ଧୁ ମିଶ୍ର ତାଙ୍କର ଉତ୍କୃଷ୍ଟ ଗ୍ରନ୍ଥ 'କୋଣାର୍କ'ରେ ପ୍ରମାଣ କରି ଦେଖାଇ ଦେଇଅଛନ୍ତି ଯେ କୃଷ୍ଣଙ୍କ ପୁତ୍ର ଶାମ୍ବ ଖ୍ରୀଷ୍ଟପୂର୍ବ ଊନବିଂଶ ଶତାବ୍ଦୀର ଲୋକ । କାରଣ 'ଭାଗବତ' ଓ ଅନ୍ୟାନ୍ୟ ପୁରାଣମାନଙ୍କରୁ ଏ ବିଷୟରେ ସ୍ପଷ୍ଟ ପ୍ରମାଣ ମିଳେ* । ଏ ସବୁ ବିଷୟ ବିଚାର କଲେ ଜଣାଯାଏ ମୈତ୍ରେୟ ବନ ବା କୋଣାର୍କରେ ଖ୍ରୀଷ୍ଟପୂର୍ବ ଊନବିଂଶ ଶତାବ୍ଦୀରୁ ଶାମ୍ବଙ୍କଦ୍ୱାରା ସୂର୍ଯ୍ୟଦେବଙ୍କର ଅଧିଷ୍ଠାନ ହୋଇଅଛି ଏବଂ ଏହାର ବହୁକାଳ ପୂର୍ବରୁ ମୈତ୍ରେୟ ବନ କୋଣାର୍କରେ ପ୍ରସିଦ୍ଧି ଲାଭ କରିଥିବ ।

ଶ୍ରୀ ତପନ ହୂଟ ତାହାଙ୍କ 'କୋଣାର୍କ'ରେ ଏହି ମୈତ୍ରେୟବନ ସମ୍ବନ୍ଧରେ ବହୁତ ଭ୍ରାନ୍ତ ମତର ଅବତାରଣା କରି ହାସ୍ୟାସ୍ପଦ ହୋଇଅଛନ୍ତି । ସେ କହନ୍ତି, ଏହି ମୈତ୍ରେୟ ବନ ଚନ୍ଦ୍ରଭାଗା ନଦୀ ତୀର କୋଣାର୍କରେ ନୁହେଁ ବରଂ ପଞ୍ଜାବରେ । କୋଣାର୍କ ସମୁଦ୍ର-

* ସ୍ୱର୍ଗୀୟ କୃପାସିନ୍ଧୁ ମିଶ୍ର—'କୋଣାର୍କ' ପୃ ୧୫

ତୀରବର୍ତ୍ତୀ ବାଲୁକାମୟ ସ୍ଥାନ ଥିବାରୁ ସେଠାରେ ଉପଲବ୍ଧ ଜନ୍ମି ବନ ହୋଇଥିବା ଅସମ୍ଭବ ଏବଂ ଶାମ୍ବ ଯେଉଁ ଚନ୍ଦ୍ରଭାଗାରେ ସ୍ନାନ କରି ଥିଲେ ତାହା କୋଣାର୍କର ଚନ୍ଦ୍ରଭାଗା ନୁହେଁ, ବରଂ ପଞ୍ଜାବର ଚନ୍ଦ୍ରଭାଗା ବା ଚେନାବ୍ ନଦୀ, କାରଣ ପଞ୍ଜାବର ଚନ୍ଦ୍ରଭାଗା ଶ୍ରୀକୃଷ୍ଣ ଓ ଶାମ୍ବଙ୍କ ବାସସ୍ଥାନ ଦ୍ୱାରକାରୁ ନିକଟ * ।

କୋଣାର୍କର ମୈତ୍ରେୟ ବନକୁ ପଞ୍ଜାବରେ ଥୋଇବାର ଯୁକ୍ତିଯୁକ୍ତ, ସ୍ୱରୂପ ମହୋଦୟ କହନ୍ତି, ପଞ୍ଜାବର ଚନ୍ଦ୍ରଭାଗା ବା ଚେନାବ୍ ନଦୀ ଦ୍ୱାରକାରୁ ଏତେ ନିକଟ ଯେ ଶାମ୍ବ ଏଠାକୁ ସ୍ନାନ କରିବାକୁ ଆସିଥିବେ ଏବଂ ଏହି ନଦୀ ତୀରବର୍ତ୍ତୀ ମୈତ୍ରେୟ ବନରେ ବାରବର୍ଷକାଳ ତପସ୍ୟା କରିଥିବେ । କିନ୍ତୁ ଏ ଯୁକ୍ତି ଆଦୌ ଯଥାର୍ଥ ତଥା ଶକ୍ତିଶାଳୀ ନୁହେଁ । ତପସ୍ୟା କରିବାପାଇଁ ବରଂ ମୁନି ଋଷିମାନେ କୋଳାହଳପୂର୍ଣ୍ଣ ସହର ନିର କୋଳାହଳଶୂନ୍ୟ ଅଞ୍ଚଳରେ ନିର୍ଜନ ବହୁଦୂରବର୍ତ୍ତୀ ସ୍ଥାନକୁ ଯାଉଥିବାର ପୁରାଣ ଓ ଧର୍ମଗ୍ରନ୍ଥମାନଙ୍କରୁ ଜଣାଯାଏ । ସେ ଯେତିକି କ୍ଳେଶ ସହ୍ୟ କରିପାରେ ସେ ସେତିକି ସିଦ୍ଧି ମୁକ୍ତିଲାଭ କରିବ, ଏ ଦୃଶ୍ୟ ଏବେ ମଧ୍ୟ ଅନେକ ଧର୍ମପ୍ରାଣ ଭକ୍ତଙ୍କଠାରେ ଦେଖାଯାଏ । ସ୍ଥାନ ଦୂର ହେଉ ବା ନିକଟ ହେଉ ଉପଯୁକ୍ତ ସ୍ଥାନରେ ତପସ୍ୱୀମାନେ ତପସ୍ୟା କରିବାକୁ ଇଚ୍ଛା କରୁଥିଲେ । ରାବଣ ତପସ୍ୟା ନିମନ୍ତେ ଲଙ୍କାରୁ କୈଳାଶ ହିମାଳୟ ଯାଉଥିଲେ । ସୁତରାଂ ଶାମ୍ବଙ୍କର ଦ୍ୱାରକାରୁ କୋଣାର୍କ ଆସିବା କଦାପି ଅସମ୍ଭବ ଲମ୍ବା ବଚନ ନୁହେଁ ।

ଦ୍ୱିତୀୟତଃ ସ୍ୱରୂପ କହନ୍ତି, କୋଣାର୍କ ବାଲୁକାମୟ ସ୍ଥାନ । 'ସୁଦୀର୍ଘ ତପସ୍ୟା କରିବା ନିମନ୍ତେ ସେଠାରେ ଉପଯୁକ୍ତ ବନ ଥିବା'

* Bishnu Swarup——'Konarka' P. 4

ବୃକ୍ଷଲତାଦି ଥିବା ଅସମ୍ଭବ । ଅତଏବ ମୈତ୍ରେୟ ବନ ଇତ୍ୟାଦି କୋଣାର୍କରେ ହୋଇ ନ ପାରେ । ପ୍ରଥମ ଯୁକ୍ତି ମତେ ତାଙ୍କର ଏହି ଯୁକ୍ତି ମଧ୍ୟ ଅସାର ଓ ଶଙ୍କାହୀନ । କୋଣାର୍କରେ ଅବଶ୍ୟ ବର୍ତ୍ତମାନ ବଡ଼ ବଡ଼ ବନ ଜଙ୍ଗଲ ନାହିଁ । ତଥାପି ସେଠାରେ ଯେ ବନ ନ ଥିଲା ଏହା କୁହାଯାଇ ନ ପାରେ । ବର୍ତ୍ତମାନ କୋଣାର୍କରେ କେତେକ ବରଗଛ, ଝାମ୍ବୁ ଓ ଲଙ୍କାଆମ୍ବ ପ୍ରଭୃତି ଗଛ ଛାଡ଼ିଦେଲେ ଅନ୍ୟ କୌଣସି ଗଛ ପ୍ରାୟ ଦେଖାଯାଏ ନାହିଁ । ତଥାପି ଯେଉଁ ସ୍ଥାନରେ ବର, ଝାମ୍ବୁ, ଲଙ୍କାଅମ୍ବ ପ୍ରଭୃତି ଗଛ ଜନ୍ମ ହୋଇପାରେ, ସେହି ସ୍ଥାନରେ ବନ ନ ଥିବା କହିବା ନିତାନ୍ତ ଅମୂଳକ । କୋଣାର୍କର ସାମାନ୍ୟ ଦୂରକୁ ଦେଖିଲେ ଦୁସ୍ତର ଓ ନିବିଡ଼ ଜଙ୍ଗଲ ମଧ୍ୟ ଦେଖିବାକୁ ମିଳେ । କୋଣାର୍କର ଅତି ନିକଟରେ 'ବାଙ୍ଗୋଇଲଟା' ଓ 'ଗୋଲବଗଡ଼' ନାମରେ ଯେଉଁ ଭୀଷଣ ଜଙ୍ଗଲ ଅଛି ସେଥିରେ ବାଘ ଭାଲୁ ଅଦ ସର୍ବଦା ଲୁଚି ରହନ୍ତି । ଏହି ସବୁ ଜଙ୍ଗଲ ସମୁଦ୍ରକୂଳ ବାଲି ଉପରେ ବଢ଼ିଅଛି । ସୁତରାଂ ସମୁଦ୍ରକୂଳ ବାଲି ଗଛ ବୃକ୍ଷ ନିମନ୍ତେ 'ନିତାନ୍ତ ପ୍ରତିକୂଳ' (Quite unfavourable') ଏ କଥା କହିବା ସ୍ୱରୂପ ମହୋଦୟଙ୍କର ଅଲୋଚନା ଅଭାବର ପରିଚାୟକ ।

କେବଳ ଏତିକି ନୁହେଁ । ପୁରାଣମାନଙ୍କରେ ଅନ୍ୟାନ୍ୟ ବୃକ୍ଷ ମଧ୍ୟରେ ଏଠାରେ ପୁଷ୍ପବୃକ୍ଷମାନଙ୍କର ନାମ ଅଛି* । 'ପ୍ରାଚୀମାହାତ୍ମ୍ୟ'ରେ ମଧ୍ୟ ଏହି ପୁଷ୍ପବୃକ୍ଷମାନଙ୍କର ବର୍ଣ୍ଣନା ଦେଖାଯାଏ † ।

---

* ଚମ୍ପକାଶୋକବକୁଲୈଃ କରବୀରୈଃ ସପାଟଲୈଃ
ପୁନ୍ନାଗୈ କର୍ଣ୍ଣିକାରୈଶ୍ଚ ବକୁଳୈର୍ନାଗକେଶରୈଃ—ବ୍ରହ୍ମପୁରାଣ ।
† 'ପ୍ରାଚୀ ମାହାତ୍ମ୍ୟ' ୮ମ ଅଧ୍ୟାୟ ।

"ଦେଖିଲେ ଅଛି ଦିବ୍ୟବନ । ଆନନ୍ଦ ରାଜୀବଲୋଚନ ॥
ନାନା କୁସୁମ ଲତାକୁଳ । ଗୁଳ୍ମ ବଲ୍ଲରୀ ଯେ ଗହଳ ।
ମାଳତୀମାଳ ନାଗେଶ୍ୱର । ଚମ୍ପକ ବକୁଳକେଶର ॥
ଧବ ଖଦିର କୁରୁବକ । ପାଟଳୀ ବକୁଳ ଅଶୋକ ॥
ମତ୍ତ ମାତଙ୍ଗ ଯୂଥ ମୃଗ । ବରାହ ସ୍ତବକ କୁରଙ୍ଗ ॥
ଶୁକ କୋକିଳ ଶାରୀ ହଂସ । ରବ କରନ୍ତି ଅହର୍ନିଶ ॥"

ମୈତ୍ରେୟ ବନରେ ବୃକ୍ଷ ଲତା, ଫୁଲ ଫଳ ଓ ଜୀବଜନ୍ତୁ ଥିବା ସମ୍ବନ୍ଧରେ ଏତେ ସୁସ୍ପଷ୍ଟ ପ୍ରମାଣ ଥିବା ସତ୍ତ୍ୱେ ସ୍ୱର୍ଗୀୟ ମହୋଦୟ ଯେ କିପରି କହିଲେ, କୋଣାର୍କର ବାଲୁକାମୟ ମରୁ ପ୍ରାନ୍ତର ବୃକ୍ଷଲତା ନିମନ୍ତେ "ନିତାନ୍ତ ପ୍ରତିକୂଳ" ବୁଝାଯାଏ ନାହିଁ । ବରଂ କୋଣାର୍କର ଏହି ମୈତ୍ରେୟ ବନରେ ପୂର୍ବକାଳରେ ସୁନ୍ଦର ସୁନ୍ଦର ବୃକ୍ଷଲତା ଥିଲା । ନାନା ପୁଷ୍ପର ସୌରଭରେ ମୈତ୍ରେୟ ବନ ପୁରି ଉଠୁଥିଲା ଏବଂ ଦୁଃସାଧ୍ୟ ରୋଗମାନଙ୍କରୁ ଲୋକମାନଙ୍କୁ ମୁକ୍ତ କରିବା ନିମନ୍ତେ ଏହା ଅତି ପ୍ରାଚୀନ କାଳରୁ ପ୍ରସିଦ୍ଧ ଲାଭ କରିଥିଲା । * ମୈତ୍ରେୟ ବନ ସମୁଦ୍ରକୂଳରେ ଥିବାର ପୁରାଣମାନଙ୍କରେ ଲେଖା ଅଛି । ପଂଜାବରେ ମୈତ୍ରେୟ ବନ ହୋଇଥିଲେ ତାହା ସମୁଦ୍ର-ତୀରବର୍ତ୍ତୀ ହୋଇଥିଲା କିପରି ? ସୁତରାଂ ଶାମ୍ବ ଯେଉଁ ମୈତ୍ରେୟ ବନରେ ତପସ୍ୟା କରିଥିଲେ ତାହା କୋଣାର୍କର ମୈତ୍ରେୟ ବନ । ଏଥିରେ ସନ୍ଦେହ କରିବାର କୌଣସି ଶାସ୍ତ୍ରସଙ୍ଗତ ଓ ଯୁକ୍ତିଯୁକ୍ତ କାରଣ ନାହିଁ ।

---

* ମୈତ୍ରେୟାଖ୍ୟଂ ବନଂ ନାମ ମୈତ୍ରେୟ ତପସାଙ୍କିତଂ,
ଯତ୍ର ଗତ୍ୱା ନରୋ ଶୀଘ୍ର ମହାରୋଗାଦ୍ୱିମୁଚ୍ୟତେ । 'କପିଳ ସଂହିତା'

# ବିଜୟୀ ଉତ୍କଳ

ଆଜି ଛିନ୍ନମସ୍ତା ଉତ୍କଳ ଜନନୀଙ୍କର ବିଚ୍ଛିନ୍ନ ମସ୍ତକ ତାଙ୍କର ରୁଧିରକ୍ତ ଶରୀରରେ ସଂଯୁକ୍ତ ହୋଇଅଛି । ଶରବେରୁଦ୍ୟମାନା ଆମ୍ଭର "ସ୍ୱର୍ଗାଦପି ଗରୀୟସୀ" ଜନ୍ମଭୂମିର ଆଜି ଛିନ୍ନ ବିଚ୍ଛିନ୍ନ ଅଙ୍ଗ ପ୍ରତ୍ୟଙ୍ଗ ନବ 'କଳେବର' ଧାରଣ କରିଅଛି । ସୁଦୀର୍ଘ ଅର୍ଦ୍ଧ ଶତାବ୍ଦୀ ପରେ କୋଟି କୋଟି ଓଡ଼ିଆ ପ୍ରାଣର ଅଧୀର ବ୍ୟାକୁଳତା ଆଜି ଦୂର ହୋଇଅଛି । ଜାତୀୟ ଜୀବନର ଆବେଗମୟ ଉଦ୍ଦାମ ଅଭିଳାଷ ଆଜି ବହୁଦିନ ପରେ ପୂର୍ଣ୍ଣ ହୋଇଅଛି । ସମଗ୍ର ଓଡ଼ିଆ ଜାତି ଆଜି ହର୍ଷରେ ଉଦ୍‌ବେଳ ଓ ଆନନ୍ଦରେ ଉଦ୍‌ବେଳିତ । ଆଜି ଓଡ଼ିଆ ଗର୍ବରେ ମସ୍ତକ ଉତ୍ତୋଳନ କରି କହିପାରେ, "ଛିନ୍ନମସ୍ତା ମା ଜନ୍ମଭୂମି, ଆଜି ତୁ ପୂର୍ଣ୍ଣାଙ୍ଗୀ । ଗଙ୍ଗାଠାରୁ ଗୋଦାବରୀ ପର୍ଯ୍ୟନ୍ତ ଯେଉଁ ବିଶାଳ ଭୂଖଣ୍ଡରେ ବୀର ଓଡ଼ିଆ ପୁଅ ଦିନେ ଗର୍ବରେ ବିଚରଣ କରୁଥିଲା, ଆଜି ସେ ଓଡ଼ିଆ ପୁଅ ସେପରି ନାହିଁ, କି ସେହି ବିଶାଳ ଭୂଖଣ୍ଡ ଆଜି ଓଡ଼ିଆର ଅଧୀନରେ ନାହିଁ । ଯେଉଁ ଓଡ଼ିଆ ପୁଅ ଦିନେ ସୁଦୂର ଜାଭା ଓ ସୁମାତ୍ରାରେ ଉପନିବେଶ ସ୍ଥାପନ କରି, ସେଠାରେ କଳିଙ୍ଗ-ସଭ୍ୟତା ପ୍ରତିଷ୍ଠିତ କରିଥିଲା, ଆଜି ସେ ଓଡ଼ିଆ ପୁଅ ଦୂର ବିଦେଶରେ ପେଟରେ ଓଦାକନା ପକାଇ କୁଲିର କାର୍ଯ୍ୟ କରେ । ଆଜି ଓଡ଼ିଆ ସ୍ଥାପତ୍ୟର ମୁକୁଟ-ମଣି, ଓଡ଼ିଆ ଶିଳ୍ପୀର ପ୍ରାଣର ସ୍ୱପ୍ନମଣି 'କୋଣାର୍କ' ଓଡ଼ିଆର ନୁହେଁ ! ଓଡ଼ିଆର ଜାତୀୟ ବିଭବ ଆଜି ଲୁପ୍ତ ହୋଇଅଛି । ତଥାପି ତୋର ପୂର୍ଣ୍ଣାଙ୍ଗ ପ୍ରାପ୍ତିରେ, ତୋର ଏହି ସୁନ୍ଦର ସୁଠାମ ଲାବଣ୍ୟମୟୀ ମୂର୍ତ୍ତିର ଦର୍ଶନରେ ଆମ୍ଭମାନଙ୍କର ଭଗ୍ନ-ହୃଦୟ ଗର୍ବରେ ସ୍ଫୀତ । ତୁ ଆଶୀର୍ବାଦ କର, ଚିରକାଳ ଓଡ଼ିଆମାନେ

ଏହି ଜାତୀୟ ଗୌରବରେ ହୃଷ୍ଟ ଓ ଗୌରବାନ୍ୱିତ ହୋଇ ତୋର ଅତୀତ ସମ୍ପଦ ଓ କୀର୍ତ୍ତି ସ୍ମରଣ କରୁଥାନ୍ତୁ ।” ବସ୍ତୁତଃ ସ୍ୱତନ୍ତ୍ର ପ୍ରଦେଶ ପ୍ରତିଷ୍ଠାରେ—ବିଚ୍ଛିନ୍ନ ଓଡ଼ିଆଭାଷୀ ଅଞ୍ଚଳମାନଙ୍କର ସମ୍ମିଶ୍ରଣରେ ଓଡ଼ିଆର ଲୁପ୍ତ ଦେଶାତ୍ମବୋଧ, ଜାତୀୟ ପ୍ରୀତି ଓ ମୃତ ଦେଶହିତୈଷିଣା ଆଜି ଉଦ୍ରିକ୍ତ ଓ ଜାଗରିତ ହୋଇଅଛି । ନବଜାଗରଣର ନୂତନ ସ୍ପନ୍ଦନରେ ଓଡ଼ିଆର ଜାତୀୟ ପ୍ରାଣ ଆଜି ଆନ୍ଦୋଳିତ ଓ ଉଦ୍‌ବେଳିତ ହୋଇଅଛି । ଦୁର୍ବିଷହ ବେଦନା ପରେ ହୃଦୟରେ ଆନନ୍ଦର ଉଜ୍ଜ୍ୱଳ ରଶ୍ମିରେଖା ଦେଖାଗଲେ ମନୁଷ୍ୟର ମନ ସ୍ୱତଃ ଅତୀତ କଥାକୁ ସ୍ମରଣ କରେ । ସୁଖର ଦିନରେ ମନୁଷ୍ୟ ଦୁଃଖର ଅପରିସୀମ କଥାକୁ ସ୍ମରଣ କରି ଅସ୍ୱସ୍ତିର ନିଶ୍ୱାସ ଛାଡ଼େ । ବ୍ୟକ୍ତିବିଶେଷ ପରି ଜାତିର ସେହିପରି ଚେତନା, ଭାବନା ଓ ପ୍ରେରଣା ଅଛି । ବ୍ୟକ୍ତିବିଶେଷ ପରି ଜାତି ଆନନ୍ଦରେ ଅଧୀର ହୋଇ ଉଠେ—ଦୁଃଖରେ ମ୍ରିୟମାଣ ହୁଏ । ଆଜି ଦେଶମିଶ୍ରଣର ଏହି ଆନନ୍ଦର ଉଜ୍ଜ୍ୱଳ ଦିନରେ ସ୍ୱତଃ ମନେ ପଡ଼େ, “କି ଥିଲା ଏ ରାଜ୍ୟ, କି ହୋଇଛି ଆଜ ।” ବିଶାଳ ସାମ୍ରାଜ୍ୟ—ଅସୀମ ସମ୍ପଦ—ନୟନତୃପ୍ତି କାରୁକାର୍ଯ୍ୟମଣ୍ଡିତ ସୁନ୍ଦର ଦେବ ମନ୍ଦିର—ଦେବୋପମ ପୁଣ୍ୟଶ୍ଳୋକ ବୀରପୁଙ୍ଗବ ସ୍ୱାଧୀନ ତେଜସ୍ୱୀ ନରପତି—ବିପୁଳ ସୈନ୍ୟବାହିନୀର ନିଷ୍କୋଷିତ ଅସିର ଉନ୍ମାଦ ଝଣତ୍କାର—ଅତୀତ ଇତିହାସର ଗୋଟିଏ ଗୋଟିଏ ପୃଷ୍ଠା ଚଳଚ୍ଚିତ୍ରର ଛବିପରି ମାନସ ଚକ୍ଷୁ ସମ୍ମୁଖରେ ଉଦ୍‌ଘାଟିତ ହୋଇଯାଏ । ଚକ୍ଷୁ ଲୋତକ ପୂର୍ଣ୍ଣ ହୋଇ ଉଠେ ।

ଅତି ପ୍ରାଚୀନ କାଳରେ ଯେତେବେଳେ ଭାରତରେ ବଙ୍ଗ, ବମ୍ବେ ଏବଂ ପଞ୍ଜାବ ପ୍ରଭୃତି ଆଧୁନିକ ଯୁଗର ସମୃଦ୍ଧିଶାଳୀ ପ୍ରଦେଶ-ମାନଙ୍କର ଅସ୍ତିତ୍ୱ ମଧ୍ୟ ନ ଥିଲା ସେତେବେଳେ ଉତ୍କଳର

ନରପତିମାନେ ସୁବିଶାଳ ସ୍ୱାଧୀନ ସାମ୍ରାଜ୍ୟର ଏକଚ୍ଛତ୍ର ପ୍ରଭୁ ଥିଲେ । ମୁସଲମାନମାନଙ୍କର ଆକ୍ରମଣ ଓ ଅତ୍ୟାଚାରରେ ନିୟତ ବ୍ୟସ୍ତ ହୋଇ ଗୋଟିକ ପରେ ଗୋଟିଏ ସ୍ୱାଧୀନ ରାଜ୍ୟ ଯେତେବେଳେ ଯବନମାନଙ୍କର ପଦାନତ ହେଉଥିଲା, ସେମାନଙ୍କର ରଣ-ଦୁନ୍ଦୁଭିରେ ଭାରତର ନଦ ନଦୀ, ବନ ପର୍ବତ ଝଙ୍କୃତ ହୋଇ ଉଠିଲା, ଯେତେବେଳେ ସମଗ୍ର ଭାରତ ମୁସଲମାନମାନଙ୍କର ପଦାକ୍ରମରେ ଥରହର ହେଉଥିଲା, ସେତେବେଳେ ଓଡ଼ିଆ ସମ୍ରାଟ୍ ସୁବିଶାଳ ସ୍ୱାଧୀନ ସାମ୍ରାଜ୍ୟରେ ନିଶ୍ଚିନ୍ତଭାବରେ ରାଜତ୍ୱ କରି ମୁସଲମାନମାନଙ୍କଦ୍ୱାରା ସିଂହାସନରୁ ବିତାଡ଼ିତ ନିଃସହାୟ ବଙ୍ଗଦେଶର ଶେଷ ହିନ୍ଦୁ ରାଜା ଲକ୍ଷ୍ମଣ ସେନଙ୍କୁ ଆଦରରେ ସ୍ନେହାଲିଙ୍ଗନ କରି ଅଭୟ-ଆଶ୍ରୟ ଦେଇଥିଲେ । * ମୁସଲମାନମାନଙ୍କର ଶାଣିତ, ରକ୍ତଦୃପ୍ତ, ରକ୍ତପିପାସୁ କୃପାଣକୁ ଭ୍ରୂକ୍ଷେପ ନ କରି ଲାଙ୍ଗୁଲା ନରସିଂହ ଦେବ ତେଲିଙ୍ଗାର ହିନ୍ଦୁରାଜାଙ୍କୁ ସାହାଯ୍ୟ ଦେବା ନିମନ୍ତେ ପ୍ରବଳ ପରାକ୍ରାନ୍ତ ବାହାମନୀ ରାଜ୍ୟର ସୁଲତାନଙ୍କ ବିରୁଦ୍ଧରେ ଦାକ୍ଷିଣାତ୍ୟ ଯାତ୍ରା କରିଥିଲେ ଏବଂ ବାହାମନୀ ସୈନ୍ୟଙ୍କୁ ଏକାବେଳକେ ଧ୍ୱସ୍ତ ବିଧ୍ୱସ୍ତ କରି ତହିଁ ହିନ୍ଦୁରାଜାଙ୍କୁ ନିର୍ଭୟରେ ରାଜତ୍ୱ କରାଇଥିଲେ । † ଓଡ଼ିଶା ବହୁକାଳ ପର୍ଯ୍ୟନ୍ତ ନିଜର ସ୍ୱାଧୀନ ସୁବିଶାଳ ସାମ୍ରାଜ୍ୟକୁ ଶତ୍ରୁର ଲେଲିହାନ ଜିହ୍ୱାରୁ ରକ୍ଷା କରି ଭାରତ ଇତିହାସରେ ଏକ ବିଶିଷ୍ଟ ସ୍ଥାନ ଅଧିକାର କରିଅଛି ।

---

* ସ୍ୱର୍ଗୀୟ କୃପାସିନ୍ଧୁ ମିଶ୍ର—'ବାରବାଟୀ' ପୃ ୭୭

† ସ୍ୱର୍ଗୀୟ କୃପାସିନ୍ଧୁ ମିଶ୍ର—'ବାରବାଟୀ' ପୃ ୧୭

ସାମ୍ରାଜ୍ୟ ବିସ୍ତାର ଓ ଦିଗ୍-ବିଜୟ ନୀତି ସୁଦୂର ବୈଦିକ ଯୁଗରୁ ଭାରତୀୟ ରାଜାମାନଙ୍କୁ ସୁବିଦିତ ଥିଲା । ବୈଦିକ ଯୁଗରେ ମଧ୍ୟ ହିନ୍ଦୁ ରାଜାମାନେ ସାମ୍ରାଜ୍ୟ ପ୍ରସାର ଉଦ୍ଦେଶ୍ୟରେ ଦିଗ୍ବିଜୟ ଅଭିଯାନ କରୁଥିଲେ । ଦିଗ୍ବିଜୟ ଓ ସାମ୍ରାଜ୍ୟ ବିସ୍ତାର ସେତେ-ବେଳେ ଦେଶର ପ୍ରତ୍ୟେକ ରାଜାଙ୍କର ଚରମ ଲକ୍ଷ୍ୟ ଥିଲା । ଅବଶ୍ୟ ବୈଦିକ ଯୁଗରେ ସେପରି ସୁବିଶାଳ ବିଶାଳ ସାମ୍ରାଜ୍ୟ ବିଦ୍ୟମାନ ଥିବାର ଇତିହାସରୁ ଅନ୍ତତଃ ଏ ପର୍ଯ୍ୟନ୍ତ କୌଣସି ପ୍ରମାଣ ମିଳିନାହିଁ । ତେବେ ଅନେକଗୁଡ଼ିଏ ରାଜ୍ୟ ଜୟ କରି "ରାଜଚକ୍ରବର୍ତ୍ତୀ" ଉପାଧିରେ ଭୂଷିତ ହେବା ସେ ଯୁଗରେ ଅନେକ ରାଜାଙ୍କର ବଳବତ୍ତୀ ବାସନା ଥିଲା । ସେହି ବାସନାର ବଶବର୍ତ୍ତୀ ହୋଇ ପରବର୍ତ୍ତୀ ଯୁଗରେ ମଗଧର ନନ୍ଦ, ମୌର୍ଯ୍ୟ ଓ ଗୁପ୍ତ ବଂଶୀୟ ସମ୍ରାଟମାନେ ଭାରତରେ ସୁବିରାଟ ସାମ୍ରାଜ୍ୟ ବିସ୍ତାର କରି ଭାରତ ଇତିହାସରେ ଅକ୍ଷୟ କୀର୍ତ୍ତି ଅର୍ଜି ଯାଇଅଛନ୍ତି । ରାଜସୂୟ ଏବଂ ଅଶ୍ୱମେଧ ଯଜ୍ଞର ଉତ୍ପତ୍ତି ଏହି ସାମ୍ରାଜ୍ୟ-ବିସ୍ତାର ବାସନାରୁ । ଧର୍ମ ପ୍ରଚାରରେ ସ୍ଥାପତ୍ୟର କଳାକାରିତା ପ୍ରଦର୍ଶନରେ, ଅନନ୍ତ ପାରାବାରର ପରପାରରେ ସୁଦୂର ଦେଶରେ ଉପନିବେଶ ସ୍ଥାପନ କରିବାରେ ଓଡ଼ିଆ କେବେ ପଶ୍ଚାତ୍‌ପଦ ହୋଇ ନାହିଁ—ସେ କାହିଁକି ସାମ୍ରାଜ୍ୟ-ବିସ୍ତାରରେ ପଶ୍ଚାତ୍‌ପଦ ହେବ ? ମଗଧର ନନ୍ଦ ସାମ୍ରାଜ୍ୟ ଓ ମୌର୍ଯ୍ୟ ସାମ୍ରାଜ୍ୟର ପତନ ପରେ ମିତ୍ର ବଂଶର ପ୍ରତିଷ୍ଠାତା ପୁଷ୍ୟମିତ୍ରଙ୍କର ସମସାମୟିକ ପ୍ରବଳପ୍ରତାପୀ ଚୈତ୍ରବଂଶୀୟ କଳିଙ୍ଗ ସମ୍ରାଟ 'ଐର ମହାମେଘ ବାହନ' ଖାରବେଳ ଭାରତରେ ଏକ ସୁବିଶାଳ କଳିଙ୍ଗ-ରାଜ୍ୟ ସ୍ଥାପନ କରିବା ନିମନ୍ତେ ନିଜର ସମସ୍ତ ଶକ୍ତି ଓ ପରାକ୍ରମ ବ୍ୟୟ କରୁଥିଲେ ।

ଖାରବେଳଙ୍କର ଅଲୋକସାମାନ୍ୟ ରଣନୈପୁଣ୍ୟରେ ସମଗ୍ର ଭାରତ ଉପରେ କମ୍ପି ଉଠୁଥିଲା । କଳିଙ୍ଗର ଚକ୍ରବର୍ତ୍ତୀ ଖାରବେଳଙ୍କ ରାଜତ୍ୱ ସମୟରେ ଭାରତର ଶତସହସ୍ର ଦୃଷ୍ଟି କଳିଙ୍ଗ ଉପରେ ନିକ୍ଷିପ୍ତ ଥିଲା । ସେତେବେଳେ ଭାରତର ଇତିହାସର ଅର୍ଥ କଳିଙ୍ଗର ଇତିହାସ । ଖ୍ରୀ: ପୂ: ୧୯୭ ଅବ୍ଦରେ ଖାରବେଳ ଜନ୍ମଗ୍ରହଣ କରିଥିଲେ । ଖ୍ରୀଷ୍ଟପୂର୍ବ ୧୮୨ ଅବ୍ଦରେ ତାହାଙ୍କର ଯୁବରାଜ ଅଭିଷେକ ହେଲା । ଉଦୟଗିରିର ହାତୀଗୁମ୍ଫାରେ ଗୋଟିଏ ଦୀର୍ଘ ଖୋଦିତ ଲିପି ପାଲି ଭାଷାରେ ଲେଖାଅଛି । ତହିଁରେ ଖାରବେଳଙ୍କ ରାଜତ୍ୱର ପ୍ରଥମ ୧୩ ବର୍ଷର ( ଖ୍ରୀ: ପୂ: ୧୭୩- ଖ୍ରୀ: ପୂ: ୧୬୦ ) ଘଟନା ବର୍ଣ୍ଣନା କରାଯାଇଅଛି । ବିହାରର ସୁନାମଧନ୍ୟ ପ୍ରସିଦ୍ଧ ଐତିହାସିକ କେ. ପି. ଜୟସ୍ୱାଲ ଏ ବିଷୟରେ ପୁଙ୍ଖାନୁପୁଙ୍ଖ ଭାବରେ ଅନୁସନ୍ଧାନ କରି ଯେଉଁ ଅଭ୍ରାନ୍ତ ଐତିହାସିକ ସତ୍ୟ ଖାରବେଳଙ୍କ ରାଜତ୍ୱ ସମ୍ବନ୍ଧରେ ଆବିଷ୍କାର କରିଅଛନ୍ତି ସେଥିରୁ ଜଣାଯାଏ, ଖାରବେଳଙ୍କର ଦିଗ୍‌ବିଜୟ ଭାରତବ୍ୟାପୀ ଥିଲା । ସମଗ୍ର ଭାରତକୁ ପଦାନତ କରି ଭାରତର ଏକଛତ୍ର ଅଧିପତି ହେବା ତାଙ୍କ ଜୀବନର ଏକମାତ୍ର ବାସନା ଥିଲା । *

ଖାରବେଳ ଦିଗ୍‌ବିଜୟରେ ବହିର୍ଗତ ହୋଇ ସର୍ବପ୍ରଥମେ ଅନ୍ଧ୍ରରାଜା ଶାତକର୍ଣ୍ଣିଙ୍କୁ ସହେନ୍ୟରେ ପରାସ୍ତ କରି, ମୂଷିକ ରାଜଧାନୀ ଆକ୍ରମଣ କରି, ମୂଷିକମାନଙ୍କୁ ଉତ୍ରସ୍ତ କରିଥିଲେ । ସମଗ୍ର ମୂଷିକ ରାଜ୍ୟ କଳିଙ୍ଗର ପଦାନତ ଓ ଅନ୍ତର୍ଗତ ହେଲା । ପ୍ରାଚୀନ ମୂଷିକ ରାଜ୍ୟ କଳିଙ୍ଗର ପଶ୍ଚିମବର୍ତ୍ତୀ ମଧ୍ୟପ୍ରଦେଶର ଅନ୍ତର୍ଗତ ଗଣ୍ଡୱାନା, ନିକଟସ୍ଥ

* Bihar and Orissa Research Society Journal, Vol. III—Part IV. p. 332-472

କୌଣସି ରାଜ୍ୟ । ରାଜତ୍ୱର ଚତୁର୍ଥ ବର୍ଷରେ ଖାରବେଳ ରାଷ୍ଟ୍ରିକ ଓ ଭୋଜକ ରାଜ୍ୟମାନଙ୍କ ବିରୁଦ୍ଧରେ ଯୁଦ୍ଧଯାତ୍ରା କଲେ । ଏ ରାଜ୍ୟ ଦୁଇଟି ଅନ୍ଧ୍ରଦେଶ ପାଖରେ ପଶ୍ଚିମ ଓ ଉତ୍ତର-ପଶ୍ଚିମରେ ଥିଲା । ଅଧୁନିକ ମହାରାଷ୍ଟ୍ର ଦେଶ ରାଷ୍ଟ୍ରିକ ରାଜ୍ୟ ଏବଂ ବେରାର ଭୋଜକ ରାଜ୍ୟ ଥିବାର ଅନୁମାନ କରାଯାଏ । ଦୂରତାବଶତଃ ଖାରବେଳ ଉକ୍ତ ରାଜ୍ୟ ଦୁଇଟି ଅଧିକାର ନ କରି କେବଳ ସେଠା ରାଜାଙ୍କୁ କଳିଙ୍ଗର ଅଧୀନ କରାଇଲେ । ସମୁଦ୍ରଗୁପ୍ତଙ୍କ ପରି ପଶ୍ଚିମ ଓ ଦକ୍ଷିଣ ଭାରତ ଜୟ କରି ଖାରବେଳ ଉତ୍ତରାଭିମୁଖରେ ଯାତ୍ରା କଲେ । ମଗଧର ତତ୍କାଳୀନ ସମ୍ରାଟ୍ ପୁଷ୍ପମିତ୍ର ଖାରବେଳଙ୍କର ପ୍ରଥମ ମଗଧ ଆକ୍ରମଣରେ ଭୀତ ଓ ତ୍ରସ୍ତ ହୋଇ ମଥୁରାକୁ ପ୍ରାଣ ଭୟରେ ପଳାଇ ଯାଇଥିଲେ । ସୁତରାଂ ଗୋରଥଗିରି କିମ୍ବା ଅଧୁନିକ ରାମଗୟା ପର୍ଯ୍ୟନ୍ତ ଖାରବେଳ ଅଗ୍ରସର ହୋଇ ସେଠାରୁ ଫେରି ଆସିଲେ । ଭାରତରେ ରାଜଚକ୍ରବର୍ତ୍ତୀ ହେବା ନିମନ୍ତେ ଖାରବେଳଙ୍କର ଅଦମ୍ୟ ଅଭିଳାଷ ଥିଲା । ମାତ୍ର ମଗଧ ସମ୍ରାଟ୍ ପୁଷ୍ପମିତ୍ରଙ୍କୁ ପରାସ୍ତ ନ କଲେ ସେତେ-ବେଳେ କେହି ରାଜଚକ୍ରବର୍ତ୍ତୀ ହୋଇ ନ ପାରନ୍ତି । ସେହି ଉଦ୍ଦେଶ୍ୟରେ ଖାରବେଳ ବିରାଟ ରଣସଜ୍ଜା କରି ସମଗ୍ର ଆର୍ଯ୍ୟାବର୍ତ୍ତରେ ଆପଣାର ପ୍ରଭୁତ୍ୱ ସ୍ଥାପନ କରିବା ଉଦ୍ଦେଶ୍ୟରେ ରାଜତ୍ୱର ଦ୍ୱାଦଶ ବର୍ଷରେ ଯୁଦ୍ଧ ଅଭିଯାନରେ ବାହାରିଲେ । ମଗଧ ଇତିହାସରେ କୌଣସି ଶତ୍ରୁ କେବେ ମଗଧ ଆକ୍ରମଣ କରି ନ ଥିଲେ । ଖାରବେଳ ପୁଷ୍ପମିତ୍ରଙ୍କୁ ପରାସ୍ତ କରି ପାଟଳୀପୁତ୍ର ଜୟ କଲେ । ପୁଷ୍ପ-ମିତ୍ର ସାମାନ୍ୟ ରାଜା ନ ଥିଲେ । ଅଶ୍ୱମେଧ ଯଜ୍ଞ କରି ସେ ସମଗ୍ର ଆର୍ଯ୍ୟାବର୍ତ୍ତରେ ଆପଣାକୁ ରାଜଚକ୍ରବର୍ତ୍ତୀ କରିଥିଲେ ଓ ଗ୍ରୀକ୍ ସମ୍ରାଟ୍ ଡେମେଟ୍ରିୟସ ଓ ମେନେଣ୍ଡରଙ୍କୁ ପରାସ୍ତ କରି ପୁଷ୍ପମିତ୍ର ଗ୍ରୀକ୍‌ମାନଙ୍କୁ ଆର୍ଯ୍ୟାବର୍ତ୍ତରୁ ବିତାଡ଼ିତ କରିଥିଲେ । ସେହି ପୁଷ୍ପମିତ୍ର

ଖାରବେଳଙ୍କ ଦ୍ୱାରା ପରାସ୍ତ ହେଲେ । ବୃହସ୍ମିତ୍ରଙ୍କ ପରାଜୟ ପରେ ମଗଧ ପରିବର୍ତ୍ତରେ କଳିଙ୍ଗ ସାମ୍ରାଜ୍ୟ ସଭ୍ୟତା ଓ ସଂସ୍କୃତିରେ ଭାରତର ପୀଠସ୍ଥଳୀ ହୋଇ ଉଠିଲା । ସେଥିପାଇଁ ଖାରବେଳଙ୍କୁ ଇଉରୋପର ନେପୋଲିୟନଙ୍କ ସହିତ ତୁଳନା କରାଯାଇପାରେ । ହାତୀଗୁମ୍ଫା ଅନୁଶାସନରୁ ମଧ୍ୟ ଜଣାଯାଏ ଖାରବେଳଙ୍କର ଦିଗ୍‌ବିଜୟ ବାସନା ଏତେ ବଳବତୀ ଥିଲା ଯେ ସେ ପ୍ରତ୍ୟେକ ଅଭିଯାନ ପରେ ରାଜଧାନୀରେ ନାନାପ୍ରକାର ଆମୋଦ ପ୍ରମୋଦର ବ୍ୟବସ୍ଥା କରୁଥିଲେ ଓ ଦାନ ଧର୍ମରେ ପ୍ରଚୁର ଅର୍ଥ ବ୍ୟୟ କରୁଥିଲେ ।

ବ୍ୟକ୍ତିବିଶେଷ ପରି ଜାତି ଓ ସାମ୍ରାଜ୍ୟର ମଧ୍ୟ ଜୀବନୀ ଶକ୍ତି ଅଛି । ତାହାର ସୌଭାଗ୍ୟ, ଦୁର୍ଭାଗ୍ୟ, ଉତ୍ଥାନ ଓ ପତନ ଅଛି । ଖାରବେଳଙ୍କର ମୃତ୍ୟୁପରେ ଉତ୍କଳର ସୁବିଶାଳ ସ୍ୱାଧୀନ ସମୃଦ୍ଧିଶାଳୀ ରାଜ୍ୟ ପରପଦାନତ ହେଲା । ଦାସତ୍ୱର କର୍କଶ ଲୌହଶୃଙ୍ଖଳରେ କଳିଙ୍ଗ ପୁନର୍ବାର ଆବଦ୍ଧ ହେଲା । ବହୁକାଳ ପର୍ଯ୍ୟନ୍ତ କଳିଙ୍ଗ ଅନ୍ଧ୍ରମାନଙ୍କର ଅଧୀନରେ ରହିଲା ଏବଂ ପରବର୍ତ୍ତୀ କାଳରେ ମଗଧର ପ୍ରବଳପରାକ୍ରାନ୍ତ ଗୁପ୍ତ ସମ୍ରାଟ୍‌ମାନେ ଏ ଦେଶରେ ଆଧିପତ୍ୟ ବିସ୍ତାର କଲେ, କିନ୍ତୁ କେଶରୀ ବଂଶୀୟ ଶିବ-ଉପାସୀ ରାଜାମାନଙ୍କର ଚତୁର୍ବର୍ଷବ୍ୟାପୀ ରାଜତ୍ୱକାଳରେ ପୁନର୍ବାର ଓଡ଼ିଶାର ପୂର୍ବ କୀର୍ତ୍ତି, ପୂର୍ବ ସୁପ୍ରକାଣ୍ଡ ସୁବିଶାଳ ସାମ୍ରାଜ୍ୟ ଫେରି ଆସିଲା । ପୁନର୍ବାର ଅପୂର୍ବ ଶକ୍ତିଶାଳୀ ଓଡ଼ିଆ ସୈନ୍ୟର ମୂର୍ତ୍ତି ଓ ଶାଣିତ ତରବାରିରେ ଶତ୍ରୁର ଶିର ଲୁଣ୍ଠିତ ହେଲା । ଓଡ଼ିଶା ଦୁର୍ଗାରଣ୍ୟ ହେଲା । ଗୌରବ-ବୈଭବରେ ଏ ଦେଶ ପାଟି ପଡ଼ିଲା । 'କେଶରୀ' ଶବ୍ଦ ବୀରତ୍ୱସୂଚକ । ସୁତରାଂ "ତ୍ରିକଳିଙ୍ଗାଧିପତି" ଏହି କେଶରୀ ବଂଶୀୟ ରାଜାମାନେ ଯେ ପ୍ରବଳପରାକ୍ରାନ୍ତ ରାଜା ଥିଲେ ଏହା ଅନୁମାନ କରିବା ଅସଙ୍ଗତ ନୁହେ । ଏହି କେଶରୀ ବଂଶୀୟ

ରାଜାମାନଙ୍କର ସମୟରୁ ଉତ୍କଳଙ୍କ ବାମ୍ବା ଉତ୍କଳ ଓଡ଼ିଶା ଇତିହାସରେ ସୁପ୍ରସିଦ୍ଧ ହୋଇ ଉଠିଲା, କାରଣ ଏମାନଙ୍କର ଉତ୍ତରରେ ଏହି ରାଜାମାନେ ରାଜତ୍ୱ କରିଥିଲେ । ଏହି କେଶରୀ ବଂଶରେ କେତେ ଜଣ ରାଜା ରାଜତ୍ୱ କରୁଥିଲେ ଏବଂ ଏହି ରାଜାମାନଙ୍କର ଶାସନ କାଳ କେତେ, ନିଶ୍ଚିତ୍ତ ପ୍ରକାରରେ ନାନା ମୁନିଙ୍କର ନାନା ମତ ଦେଖାଯାଏ । ଶ୍ରୀଯୁକ୍ତ ମନମୋହନ ଗାଙ୍ଗୁଲି କହନ୍ତି, ଏହି ବଂଶରେ ୪୪ ଜଣ ରାଜା ରାଜତ୍ୱ କରିଥିଲେ ଏବଂ ସେ ଯଯାତିକେଶରୀଙ୍କୁ ଖ୍ରୀଷ୍ଟ ନବମ ଶତାବ୍ଦୀର ଲୋକ ବୋଲି କହନ୍ତି* । କିନ୍ତୁ ତାଙ୍କର ମତ ଅଭ୍ରାନ୍ତ ନୁହେ । ସେ ଭର୍ତ୍ତୃହରିଙ୍କୁ ଜନ୍ମେଜୟ ବୋଲି ଧରି ମହାପ୍ରମାଦରେ ପଡ଼ିଛନ୍ତି । ସ୍ୱର୍ଗୀୟ ବୃଦ୍ଧାସିଂହ ମିଶ୍ର ପ୍ରଣୀତ ଉତ୍କଳ ଇତିହାସରେ ନିମ୍ନଲିଖିତ ପ୍ରକାରରେ ଜଣାଣ କେଶରୀ ରାଜାମାନଙ୍କର କାଳ ନିରୂପଣ [illegible] ଛନ୍ତି ।

୧ [illegible] ଖ୍ରୀଷ୍ଟ ୪୨୦-୧୦୪୨
୧ [illegible]ଲକମ୍—୪୨୦-୪୫୨
୨ ଯଯାତି—୪୫୨-୪୯୮
୩ ଲଲାଟେନ୍ଦୁ—୬୩୧-୬୭୪

ସେ ଯାହା ହେଉ ଜନମେଜୟ, ଯଯାତି ଓ ଲଲାଟେନ୍ଦୁ କେଶରୀ ବଂଶର ପ୍ରଧାନ ରାଜା । ମାଦଳା ପାଞ୍ଜିରେ ଅନେକ ଅଦ୍ଭୁତ

---

* "× × but the approximate date of his reign can be assigned with sufficient accuracy to the period from the middle of the 8th to the beginning of the 9th century A. D." M. M. Ganguli—'Orissa and her remains' p. 13.

ଅନେକ ପ୍ରଧାନ ରାଜାମାନଙ୍କର ନାମ ଦେଖାଯାଏ । କିନ୍ତୁ ଘଟଣାରେ ଅନେକ ଅସାମଞ୍ଜସ୍ୟ ଥିବାରୁ ସେମାନଙ୍କୁ ଐତିହାସିକ ରାଜା ବୋଲି ଧରିଯାଇ ନ ପାରେ ।

କେଶରୀ ବଂଶର ପ୍ରଥମ ରାଜା ଜନ୍ମେଜୟ "ମହାରାଜାଧିରାଜ" "ତ୍ରିକଳିଙ୍ଗାଧିପତି" "ପରମମାହେଶ୍ୱର" "ପରମଭଟ୍ଟାରକ" ଓ "ସୋମକୁଳତିଳକ" ପ୍ରଭୃତି ଉପାଧିରେ ଭୂଷିତ ଥିଲେ । କଟକ ନିକଟରେ ମହାନଦୀ ଓ ବିରୂପା ନଦୀ ମଧ୍ୟରେ ଜନ୍ମେଜୟ "ଚୌଦ୍ୱାର" ନଗର ସ୍ଥାପନ କରି ସେଠାରେ ରାଜଧାନୀ କରିଥିଲେ । ଯଯାତି କେଶରୀ ଭୁବନେଶ୍ୱରରେ ଲିଙ୍ଗରାଜଙ୍କର ମନ୍ଦିର ନିର୍ମାଣ କାର୍ଯ୍ୟ ଆରମ୍ଭ କଲେ । ଲଲାଟେନ୍ଦୁ କେଶରୀ ଖ୍ରୀଷ୍ଟ ୬୬୬ ଅବ୍ଦରେ ସେ ମନ୍ଦିର କାର୍ଯ୍ୟ ଶେଷ କରିଥିଲେ * । କେଶରୀ-ବଂଶୀୟ ରାଜାମାନେ ସମସ୍ତେ ପରମ ଶୈବ ଥିଲେ । ସୁତରାଂ ସେମାନଙ୍କ ରାଜତ୍ୱ କାଳରେ ଭୁବନେଶ୍ୱର ଅସଂଖ୍ୟ ସୁନ୍ଦର ଶିବ ମନ୍ଦିରରେ ପୂର୍ଣ୍ଣ ହୋଇଗଲା । ନୂତନ ଶିବକ୍ଷେତ୍ର ଯୋଗେ ଭୁବନେଶ୍ୱର ମାହାତ୍ମ୍ୟ ହିନ୍ଦୁଜଗତରେ ବହୁପରିମାଣରେ ବଢ଼ିଗଲା । ଭୁବନେଶ୍ୱର ଅତି ପ୍ରାଚୀନ କାଳରୁ ଏପରି କି ନନ୍ଦରାଜାମାନଙ୍କର ରାଜତ୍ୱ କାଳରୁ କଳିଙ୍ଗର ରାଜଧାନୀ ଥିଲା, ସୁତରାଂ ସେହି ସ୍ଥାନକୁ ରାଜଧାନୀରେ ପରିଣତ କରି ତାହାକୁ ଏକ ଗୌରବପୂର୍ଣ୍ଣ ଶିବ-କ୍ଷେତ୍ର କରିବା କେଶରୀବଂଶୀୟ ରାଜାମାନଙ୍କ ପକ୍ଷରେ ସ୍ୱାଭାବିକ । ଲିଙ୍ଗରାଜଙ୍କ ମନ୍ଦିର ପାର୍ଶ୍ୱରେ ଠିକ୍ ଦକ୍ଷିଣକୁ ଲଲାଟେନ୍ଦୁ ଗୋଟିଏ ନଅର ତିଆରି କରି ବାସକଲେ । ଉକ୍ତ ନଅର ପାଶରୀ ପ୍ରଭୃତିରେ

---

* ଗଜାବ୍ଧିନ୍ଦୁ ମିତେ ଜାତେ ଶକାବ୍ଦେ କୃତ୍ତିବାସସଃ,
ପ୍ରାସାଦ ମକରୋଦ୍ରାଜା ଲଲାଟେନ୍ଦୁସ୍ତୁ କେଶରୀ ।

ଅବଶେଷ ଅଦ୍ୟାପି ରହିଅଛି । କୋଣାର୍କର ମୈନେସ୍ଵବନ ପର ଭୁବନେଶ୍ବରର ଏକାମ୍ରକାନନ ପୁରାଣପ୍ରସିଦ୍ଧ । ଲଲାଟେନ୍ଦୁକେଶରୀଙ୍କ ରାଜତ୍ୱ କାଳରେ ଚୀନ୍ ପରିବ୍ରାଜକ ହୁଏନ୍‌ସାଂ ଓଡ଼ିଶା ପରିଦର୍ଶନ କରିଥିଲେ । ସେ ସମୟରେ ସୁଦ୍ଧା ଓଡ଼ିଶାରେ ବୌଦ୍ଧଧର୍ମର ପ୍ରାଦୁର୍ଭାବ ଥିବା କଥା ସେ ଲେଖି ଯାଇଛନ୍ତି । ସେ ସମୟରେ ଚିଲିକା ହ୍ରଦ ଓଡ଼ିଶାରେ ପ୍ରଧାନ ବନ୍ଦର ଥିଲା ଓ ଚିଲିକା ଦେଇ ଦେଶ ବିଦେଶକୁ ଅର୍ଣ୍ଣବପୋତ ଯାତାୟାତ କରୁଥିଲା ।

ଖାରବେଳଙ୍କ ପର କେଶରୀବଂଶୀୟ ରାଜାମାନେ ଦିଗ୍‌ବିଜୟ ନିମନ୍ତେ ଦୂର ଦେଶକୁ ଯାଇ ନ ଥିଲେ । ସେମାନେ ସାଧାରଣତଃ ଶାନ୍ତିପ୍ରିୟ ଥାଇ ଧର୍ମକାର୍ଯ୍ୟରେ ବିଶେଷ ମନ ଦେଇଥିଲେ । କୌଣସି କେଶରୀରାଜାଙ୍କୁ ସମର-ଶୈାର୍ଯ୍ୟ ଦେଖାଇବାକୁ ପଡ଼ି ନ ଥିଲା । ବୌଦ୍ଧଧର୍ମର ବିନାଶ ଓ ଶୈବଧର୍ମର ପ୍ରାଧାନ୍ୟ ବିସ୍ତାର କରିବା ସେମାନଙ୍କ ଜୀବନର ଚରମ ଲକ୍ଷ୍ୟ ଥିଲା । ତେବେ ମାଦଳାପାଞ୍ଜିରୁ ଜଣାଯାଏ କେଶରୀବଂଶୀୟ ରାଜାମାନଙ୍କର ରାଜ୍ୟ ଉତ୍ତରରେ ହରିଦ୍ୱାର କେନ୍ଦୁଝର କୋଣ ଉତ୍ତରବର୍ତ୍ତୀ କାଂଶବାଂଶ ନଦୀଠାରୁ ଦକ୍ଷିଣରେ ଋଷିକୁଲ୍ୟା ନଦୀ ପର୍ଯ୍ୟନ୍ତ ଓ ପୂର୍ବରେ ସାଗର ତୀରରୁ ପଶ୍ଚିମରେ ଢେଙ୍କାନାଳ ଓ ଅନୁଗୁଳ ପର୍ଯ୍ୟନ୍ତ ବିସ୍ତୃତ ଥିଲା ଓ ସମସ୍ତ ରାଜ୍ୟର ପରିମାଣ ପ୍ରାୟ ୧୫୦୦୦ ବର୍ଗ ମାଇଲ ଏବଂ ବାର୍ଷିକ ରାଜସ୍ୱ ପ୍ରାୟ ୧୫ ଲକ୍ଷ ମାତ୍ର ସ୍ୱର୍ଣ୍ଣମୁଦ୍ରା ଥିଲା * ।

କେଶରୀବଂଶୀୟ ରାଜାମାନଙ୍କ ପରେ ଗଙ୍ଗବଂଶୀୟ ରାଜାମାନେ ଉତ୍କଳରେ ରାଜତ୍ୱ କଲେ । ଏମାନଙ୍କ ସମୟରେ ସାମ୍ରାଜ୍ୟର ସୀମା

---

* The Prachi—Vol 2, part II—"The main currents of the history of Orissa." P. 3.

ଦକ୍ଷିଣକୁ ବହୁଦୂର ପର୍ଯ୍ୟନ୍ତ ମାଡ଼ି ଯାଇଥିଲା । କଳିଙ୍ଗର ଦକ୍ଷିଣରେ ଥିବା ଋଷିକୁଲ୍ୟା ନଦୀର ଦକ୍ଷିଣତୀରବର୍ତ୍ତୀ ରାଜ୍ୟସବୁ ଗଙ୍ଗବଂଶୀୟ ରାଜାମାନଙ୍କର ହସ୍ତଗତ ହେଲା । ମୂଳତଃ ଗଙ୍ଗବଂଶୀୟ ରାଜାମାନଙ୍କର ରାଜ୍ୟ ଦକ୍ଷିଣରେ ଗୋଦାବରୀ ନଦୀ ପର୍ଯ୍ୟନ୍ତ ଏବଂ ପୂର୍ବରେ ଭାଗୀରଥୀ କୂଳରୁ ପଶ୍ଚିମରେ ମହାରାଷ୍ଟ୍ର ପର୍ଯ୍ୟନ୍ତ ବିସ୍ତୃତ ଥିଲା । ଘୋର ଅନ୍ତର୍ବିବାଦ, ଈର୍ଷା, ଦ୍ୱେଷ ଓ ଜଘନ୍ୟ ସ୍ୱାର୍ଥାନ୍ୱେଷା ଫଳରେ ହର୍ଷ-ବର୍ଦ୍ଧନଙ୍କ ମୃତ୍ୟୁପରେ ଖ୍ରୀଷ୍ଟ ସପ୍ତମ ଶତାବ୍ଦୀରେ ଓ ତତ୍ପରବର୍ତ୍ତୀ ଯୁଗରେ ଯେଉଁବେଳେ ଭାରତରେ କୌଣସି ସୁବିଶାଳ ସାମ୍ରାଜ୍ୟର ଅସ୍ତିତ୍ୱ ସୁଦ୍ଧା ନ ଥିଲା, ସମସ୍ତ ଭାରତ କ୍ଷୁଦ୍ର କ୍ଷୁଦ୍ର ରାଜ୍ୟରେ ବିଭକ୍ତ ହେଲା, ସେତିକିବେଳେ ଗଙ୍ଗାବଂଶୀୟ ରାଜାମାନେ ଉତ୍କଳରେ ଏକ ସୁବିଶାଳ ସ୍ୱାଧୀନ ସାମ୍ରାଜ୍ୟ ସ୍ଥାପନ କରି ଓଡ଼ିଶା ଇତିହାସରେ ଚିରଯଶସ୍ୱୀ ହୋଇଅଛନ୍ତି । ଗଙ୍ଗା ଓ ସୂର୍ଯ୍ୟବଂଶୀୟ ରାଜାମାନଙ୍କ ରାଜତ୍ୱକାଳ ଓଡ଼ିଶାର ଇତିହାସରେ ଗୋଟିଏ ଚିରଭାସ୍ୱର ତଥା ଦେଦୀପ୍ୟମାନ ଯୁଗାନ୍ତକାରୀ ଗୌରବାବହ ଘଟଣା । ଓଡ଼ିଶାର ସଭ୍ୟତା, ସଂସ୍କୃତି, ଶିଳ୍ପଚାତୁରୀ, ସ୍ଥାପତ୍ୟ-ଶିଳ୍ପ ଏହି ଯୁଗରେ ଉନ୍ନତିର ଚରମ ସୀମାରେ ଉପନୀତ ହୋଇଥିଲା । ଭାରତ କାହିଁକି ସମଗ୍ର ପୃଥିବୀର ଇତିହାସ ଆଲୋଚନା କଲେ ଦେଖାଯାଏ, କୌଣସି ଜାତିର ଗୌରବ, ପରାକ୍ରମ ଦୀପ୍ତି ଓ ଶକ୍ତି ଏତେ ଦୀର୍ଘକାଳ ସ୍ଥାୟୀ ହୋଇ ନାହିଁ । ବହିଃଶତ୍ରୁର ଆକ୍ରମଣ, ଜାତୀୟ ଅନ୍ତର୍ବିବାଦ ଓ ନାନାପ୍ରକାର ବାଧା ବିଘ୍ନକୁ ତଳେମାଡ଼ି ଭ୍ରୂକ୍ଷେପ ନ କରି ଓଡ଼ିଆ-ମାନେ ନିଜର ଅଲୋକସାମାନ୍ୟ ବୀରତ୍ୱରେ ପୂର୍ଣ୍ଣ ଦୀର୍ଘ ପାଞ୍ଚଶହ ବର୍ଷ ପର୍ଯ୍ୟନ୍ତ ଦେଶର ଦୀପ୍ତି ଓ ଗୌରବ ଅକ୍ଷୁଣ୍ଣ ରଖିପାରିଥିଲେ । ଏହା କମ୍ ବିସ୍ମୟକର ବ୍ୟାପାର ନୁହେଁ । ସମୃଦ୍ଧିଶାଳୀ ମୌର୍ଯ୍ୟ ସାମ୍ରାଜ୍ୟ ମୋଟେ ବଞ୍ଚି ଥିଲା ୧୦୦ ବର୍ଷ । ଗୁପ୍ତ ସାମ୍ରାଜ୍ୟର ଆୟୁ

ଷୋଡ଼ଶ ବର୍ଷ ମଧ୍ୟରେ । ମୋଗଲମାନଙ୍କର ଶକ୍ତିଶାଳୀ ସାମ୍ରାଜ୍ୟ ମୋଟେ ତିଷ୍ଠି ପାରିଥିଲା ୨୦୦ ବର୍ଷ । ମହାରାଷ୍ଟ୍ର ନାୟକ ଛତ୍ରପତି ଶିବାଜୀଙ୍କର ରାଜ୍ୟ ଏହାଠାରୁ ଅଳ୍ପବ କମ୍ । ଉତ୍କଳର ଗୌରବମୟ ବୈଭବଶାଳୀ ଯୁଗ ଯେ ପୂର୍ଣ୍ଣ ୫୦୦ ବର୍ଷ ପର୍ଯ୍ୟନ୍ତ ତିଷ୍ଠି ପାରିଥିଲା ଏହା କେବଳ ଭାରତରେ ନୁହେ ପୃଥିବୀର ଇତିହାସରେ ଏକ ଅଦ୍ଭୁତ ବ୍ୟାପାର ।

ଗଙ୍ଗାବଂଶର ପ୍ରଥମ ସମ୍ରାଟ୍ ଅନନ୍ତବର୍ମ୍ମା ଚୋଳଗଙ୍ଗଦେବ କିମ୍ବା ଚୋଡ଼ଗଙ୍ଗଦେବ ଖ୍ରୀ: ୧୦୭୮ ଅବ୍ଦ, ଫେବୃଆରୀ ୧୭ ତାରିଖରେ ଉତ୍କଳର ସିଂହାସନରେ ଆରୂଢ଼ ହେଲେ । * ତାଙ୍କର ରାଜତ୍ୱକାଳରେ ପ୍ରାଚୀନ ଉତ୍କଳ ଓ କଳିଙ୍ଗ ଏକରାଜ୍ୟ ଏବଂ ଏକଶାସନାଧୀନ ହୋଇଲା । ସେହି ଦିନଠାରୁ କଳିଙ୍ଗର ନାମ ଲୋପ ପାଇଲା ଏବଂ ସମସ୍ତ ଓଡ଼ିଆ ରାଜ୍ୟ ଉତ୍କଳ ନାମରେ ପରିଚିତ ହେଲା । ଚୋଳଗଙ୍ଗଦେବଙ୍କର ପୂର୍ବପୁରୁଷମାନେ ମହୀଶୂର ରାଜ୍ୟରୁ ଆସି ଋଷିକୁଲ୍ୟା ନଦୀର ଦକ୍ଷିଣରେ ବଣାଖାପଭନର ନିକଟବର୍ତ୍ତୀ ସୀମାଚଳ ପର୍ଯ୍ୟନ୍ତ ରାଜ୍ୟରେ ରାଜତ୍ୱ କରୁଥିଲେ । ସେମାନଙ୍କର ରାଜଧାନୀ କଳିଙ୍ଗ ନଗର କିମ୍ବା ଅଧୁନାର ମୁଖଲିଙ୍ଗରେ ଥିଲା† । କେଶରୀ ବଂଶର ଶେଷ ରାଜା ସୁବର୍ଣ୍ଣକେଶରୀଙ୍କୁ ଯୁଦ୍ଧରେ ପରାସ୍ତ କରି ଚୋଳଗଙ୍ଗଦେବ ଉତ୍କଳ ଜୟ କଲେ । ଚୋଳଗଙ୍ଗଦେବଙ୍କର ପିତା ରାଜରାଜଦେବ

---

* "His coronation took place in the 999th year of the Saka era or A. D. 1078"—Prachi 'the Gangas of Kalinga'—Vol 2-part II, p. 35

† Smith—The Early History of India—p. 475, foot note p. 476.

ଶୈଳରାଜ୍ୟର ରାଜା ରାଜେନ୍ଦ୍ର ଶୈଳଙ୍କର ପରମ ସୁନ୍ଦରୀ କନ୍ୟା ରାଜସୁନ୍ଦରୀଙ୍କୁ ବିବାହ କରିଥିଲେ । ରାଜସୁନ୍ଦରୀଙ୍କର ଗର୍ଭରୁ ଶୈଳଗଙ୍ଗ ଜାତ ହୋଇଥିଲେ । ସେଥିପାଇଁ ତାଙ୍କର ନାମ ଶୈଳଗଙ୍ଗଦେବ । ମଧ୍ୟଯୁଗରେ କେବଳ ଉତ୍କଳରେ ନୁହେ ସମସ୍ତ ଭାରତଭୂମିରେ ଶୈଳଗଙ୍ଗଦେବ ଜଣେ ଅଦ୍ୱିତୀୟ ରାଜା ଥିଲେ । ବଙ୍ଗ ପ୍ରଦେଶର ଗଙ୍ଗାନଦୀ କୂଳରେ ଥିବା ମନ୍ଦର ରାଜ୍ୟ ସେ ଆକ୍ରମଣ କରି ନିଜ ରାଜ୍ୟର ଅନ୍ତର୍ଭୁକ୍ତ କଲେ । ମଧ୍ୟପ୍ରଦେଶ ଅନ୍ତଃପାତୀ ହୈହୟ ରାଜ୍ୟକୁ ହସ୍ତଗତ କରି ଉତ୍କଳର ପଶ୍ଚିମ ସୀମାକୁ ଶୈଳଗଙ୍ଗଦେବ ଅଧୁନାକ ଗଣ୍ଡୱାନା ପର୍ଯ୍ୟନ୍ତ ବିସ୍ତୃତ କରିଥିଲେ । ତତ୍ପରେ ସେ ବଙ୍ଗର ରାଜଧାନୀ ଗୌଡ଼ରେ ଥିବା "ମନ୍ଦରଗଡ଼" ଦୁର୍ଗକୁ ଆକ୍ରମଣ କଲେ । ଏହି ଯୁଦ୍ଧରେ ବଙ୍ଗର ରାଜା ସମ୍ପୂର୍ଣ୍ଣରୂପେ ପରାସ୍ତ ହେବାରୁ ଉତ୍କଳର ବିଜୟ ପତାକା ଏହି ମନ୍ଦର ଦୁର୍ଗ ଉପରେ ପ୍ରୋଥିତ ହେଲା । ସେହି ଦିନଠାରୁ ଗଙ୍ଗାବଂଶୀୟ ରାଜାମାନେ "ଗଜପତି" "ଗୌଡ଼େଶ୍ୱର" ପ୍ରଭୃତି ଉପାଧିରେ ଭୂଷିତ ହେଲେ । ସ୍ଥୂଳତଃ ବୃହତ୍ତର ଉତ୍କଳ ଶୈଳଗଙ୍ଗଦେବଙ୍କ ରାଜତ୍ୱ କାଳରେ ଗଙ୍ଗାନଦୀ ଠାରୁ ଗୋଦାବରୀ ନଦୀ ପର୍ଯ୍ୟନ୍ତ ବିସ୍ତୃତ ଥିଲା । * ଶୈଡ଼ଗଙ୍ଗ ଦେବଙ୍କର ସାମ୍ରାଜ୍ୟ ବଡ଼ ଉନ୍ନତ ଓ ସମୃଦ୍ଧିଶାଳୀ ଥିଲା । ରାଜ୍ୟର ସୁଶାସନ ନିମନ୍ତେ ସେ ଅନେକ ନିୟମ ପ୍ରଣୟନ କରିଥିଲେ ।

---

* The most notable king of the Eastern Gangas of Kalinga, was Anant Varman Choragang Dev who reigned from 1076 to 1147 and carved out for himself a considerable kingdom, extending from the Ganges to the Godavari—Smith Early History of India—p. 475.

ନାନା କୀର୍ତ୍ତି ସୃଷ୍ଟି କରିଥିଲେ । ଉତ୍କଳର ଆର୍ଥିକ ଅବସ୍ଥା ସେ ସମୟରେ ଏତେ ସ୍ୱଚ୍ଛଳ ଥିଲା ଯେ ଚୋଡ଼ଗଙ୍ଗଦେବ ୯୯,୦୦୦ ଯୁଦ୍ଧ-ହସ୍ତୀ ରଖିଥିଲେ । ସେଥିପାଇଁ ତାଙ୍କୁ "ନବନବତି ସହସ୍ର କୁଂଜରାଧିପତି" ଉପାଧି ଦିଆଯାଇଥିଲା । ସେ ସମୟରେ କଳିଙ୍ଗର ହସ୍ତୀ ସମଗ୍ର ଭାରତରେ ଗୋଟିଏ ବହୁମୂଲ୍ୟ ସମ୍ପଦରୂପେ ପରିଗଣିତ ହେଉଥିଲା । ଉତ୍କୃଷ୍ଟ ଜାତୀୟ ହସ୍ତୀଟିଏ ଦେଖିଲେ ଲୋକେ ତାକୁ "କଳିଙ୍ଗ କାନ୍ତାରକ" ବୋଲି ଆଖ୍ୟା ଦେଉଥିଲେ ।

ପ୍ରାତଃସ୍ମରଣୀୟ ଚିର ବନ୍ଦନୀୟ ଗଙ୍ଗବଂଶର ତୃତୀୟ ରାଜା ଅନଙ୍ଗଭୀମଦେବଙ୍କ ରାଜତ୍ୱ କାଳରେ କେବଳ ଓଡ଼ିଶାର ରାଷ୍ଟ୍ରୀୟ ସୀମା ନୁହେଁ, ସ୍ଥାପତ୍ୟ-ଶିଳ୍ପ, ମନ୍ଦିର-ନିର୍ମାଣ କୌଶଳ ଓ ଧର୍ମ ଜୀବନର ମଧ୍ୟ ପୂର୍ଣ୍ଣ ବିକାଶ ଓ ଅଭିବୃଦ୍ଧି ହୋଇଥିଲା । ରାଜା ଅନଙ୍ଗଭୀମଦେବଙ୍କର ଅବିନଶ୍ୱର କୀର୍ତ୍ତିରାଜିମାନ କାର୍ତ୍ତିସ୍ତମ୍ଭ, ପୁରୀର ଜଗନ୍ନାଥ ମନ୍ଦିର—ଯାହା ଯୁଗେ ଯୁଗେ ସମସ୍ତ ହିନ୍ଦୁ ଭାରତର ଧର୍ମ-ଜୀବନକୁ ପ୍ରଭାବିତ ଓ ଅନୁପ୍ରାଣିତ କରିଅଛି, ଓ "ବୀର ରକ୍ତ ପିଣ୍ଡେ ଗଢ଼ା ଯାର ମାଟି" ଐତିହାସିକ ଦୁର୍ଗ ବାରବାଟୀ ଯାହା ସ୍ୱାଧୀନ ଉତ୍କଳର ଗୌରବକୁ ବହୁକାଳ ପର୍ଯ୍ୟନ୍ତ ଅକ୍ଷୁଣ୍ଣ ରଖି ପାରିଥିଲା, ଷଷ୍ଠ ଶତାଧିକ ବର୍ଷ ପର୍ଯ୍ୟନ୍ତ ଏହି ବାରବାଟୀ ଉତ୍କଳ ନରପତି ଓ ଶାସନକର୍ତ୍ତାମାନଙ୍କର ଆଶ୍ରୟସ୍ଥଳୀ ଥିଲା ଏବଂ ଏହି ବାରବାଟୀ ଦୁର୍ଗର ଇତିହାସହିଁ ବହୁକାଳ ପର୍ଯ୍ୟନ୍ତ ଉତ୍କଳର ଇତିହାସ ହେଲା ।

ଅନଙ୍ଗଭୀମଦେବ ଜଣେ ପ୍ରବଳପରାକ୍ରାନ୍ତ ଅସାମାନ୍ୟ ପ୍ରତିଭା-ସମ୍ପନ୍ନ ଯୋଦ୍ଧା ଓ ସୁଶାସକ ଥିଲେ । ସେ ଖ୍ରୀଷ୍ଟ ୧୧୮୯ ରୁ ୧୨୨୩ ଅବ୍ଦ ପର୍ଯ୍ୟନ୍ତ ରାଜତ୍ୱ କରିଥିଲେ । ମାଦଳାପାଞ୍ଜିରେ ରକ୍ଷିତ ତାଙ୍କର ଏକ ବକ୍ତୃତାରୁ ଜଣାଯାଏ, ତାଙ୍କ ରାଜତ୍ୱକାଳରେ ଉତ୍କଳର ସୀମା

ଉତ୍ତରରେ ବୁଢ଼ାବଳଙ୍ଗ ନଦୀ, ଦକ୍ଷିଣରେ ରାଜମହେନ୍ଦ୍ରୀ ଓ ପଶ୍ଚିମରେ ବୌଦ ଓ ସୋନପୁର ପର୍ଯ୍ୟନ୍ତ ବିସ୍ତୃତ ହୋଇଥିଲା ଏବଂ ଏଥି ତଦାଧିକୃତ ରାଜ୍ୟରୁ ଅଧିକା ୨୦ ଲକ୍ଷ ମାତ୍ର ସ୍ୱର୍ଣ୍ଣ ମିଳୁଥିଲା । * ଅନଙ୍ଗଭୀମଦେବଙ୍କର ୫୦ ହଜାର ଅଶ୍ୱାରୋହୀ, ୬୦ ହଜାର ପଦାତିକ ଓ ୨୫ ହଜାର ହସ୍ତୀ ସର୍ବଦା ଯୁଦ୍ଧ ନିମନ୍ତେ ପ୍ରସ୍ତୁତ ଥିଲେ ।

ଅନଙ୍ଗଭୀମଦେବଙ୍କ ରାଜତ୍ୱ କାଳରେ ମୁସଲମାନମାନେ ପ୍ରଥମେ ଉତ୍କଳ ଆକ୍ରମଣ କଲେ । ମୁସଲମାନମାନେ ବଙ୍ଗ ଆକ୍ରମଣ କରିବାରୁ ବଙ୍ଗଦେଶର ଶେଷ ହିନ୍ଦୁ ରାଜା ଲକ୍ଷ୍ମଣସେନ ଭୟରେ ବଙ୍ଗଦେଶ ଛାଡ଼ି ୧୨୦୩ ଖ୍ରୀଷ୍ଟାବ୍ଦରେ ଉତ୍କଳକୁ ଆସି ଅନଙ୍ଗ-ଭୀମଦେବଙ୍କର ଆଶ୍ରୟ ପ୍ରାର୍ଥୀ ହୋଇଥିଲେ । ବକ୍ତିଆର ଖିଲିଜିଙ୍କର ଜଣେ ସେନାପତି ମହମ୍ମଦ-ଇ-ସିରାକ୍ ୧୨୦୫ ଖ୍ରୀଷ୍ଟାବ୍ଦରେ ପ୍ରଥମେ ଓଡ଼ିଶା ଆକ୍ରମଣ କଲେ । ଭୁବନେଶ୍ୱର ଶିଳାଲିପିରୁ ଜଣାଯାଏ ଅନଙ୍ଗଭୀମଦେବଙ୍କର ମନ୍ତ୍ରୀ ଗୋବିନ୍ଦ ପଞ୍ଚକେଶ୍ୟାଢ଼ଷ ବଙ୍ଗର ଚତୁର୍ଥ ସୁଲତାନ ଗିୟାସୁଦ୍ଦିନ ଇୱାଜ୍ ଓ ଚେଦି ରାଜ୍ୟର ତୁମାନ୍ ରାଜାଙ୍କୁ ଯୁଦ୍ଧରେ ପରାସ୍ତ କରିଥିଲେ † । ସେତେବେଳେ ଉତ୍ତର ଓ ପଶ୍ଚିମ ଭାରତର ଅନେକ ଶକ୍ତିଶାଳୀ ରାଜ୍ୟ ମୁସଲମାନଙ୍କ ନିକଟରେ ଆତ୍ମସମର୍ପଣ କରି ନିଜର ସ୍ୱାଧୀନତା ହରାଇଲେ । ଓଡ଼ିଶାକୁ, ନିଜର ଜନ୍ମଭୂମିକୁ ଏହି ଘୋର [illegible], ଅପମାନ ଓ ସଙ୍କଟରୁ ରକ୍ଷା କରିବା ନିମନ୍ତେ ଅନଙ୍ଗଭୀମଦେବ ଦାସବଂଶୀୟ

---

* ପ୍ୟାରୀମୋହନ ଆଚାର୍ଯ୍ୟ—ଉତ୍କଳ ଇତିହାସ ପୃ ୬୮

† O' Malley—District Gazetteers—Balasore, p. 23 "...In 1205 came the first Muhammadan incursion......"

ଇତିହାସପ୍ରସିଦ୍ଧ ବଳବନଙ୍କ ପରି ଦେଶର ସୁଦୃଢ଼ ଅଟଳ ଦୁର୍ଗ ନିର୍ମାଣ କରିଥିଲେ । ଓଡ଼ିଶା ଦୁର୍ଗାବରଣୀ ହେଲା । ମହାନଦୀ କୂଳସ୍ଥ ବାରବାଟୀ ଦୁର୍ଗସ୍ଥ ନବତଳ ପ୍ରାସାଦରୁ ବିଜୟ-ବହ୍ନି-ସଙ୍କେତ ଓଡ଼ିଶାର ଚତୁ-ର୍ଦ୍ଦିଗକୁ ଉଜ୍ଜ୍ୱଳ ଆଲୋକରେ ଉଦ୍ଭାସିତ କଲା । ଅମ୍ବର ଝଙ୍କାରରେ ଓଡ଼ିଶାର ଶ୍ୟାମଳ ସୁନ୍ଦର ବନଭୂମି କମ୍ପି ଉଠିଲା । ସୁପ୍ରସିଦ୍ଧ ମୌର୍ଯ୍ୟ ସମ୍ରାଟ୍ ଚନ୍ଦ୍ରଗୁପ୍ତଙ୍କର ସୈନ୍ୟସଂଖ୍ୟା ଥିଲା ମୋଟ ୬୯୦,୦୦୦ ଏବଂ ସେ ଥିଲେ ପ୍ରାୟ ସମଗ୍ର ଭାରତର ଏକଚ୍ଛତ୍ର ସମ୍ରାଟ୍ । କିନ୍ତୁ ଓଡ଼ିଶାର ରାଜା ଅନଙ୍ଗଭୀମଦେବଙ୍କର ସୈନ୍ୟ ସଂଖ୍ୟା ଯୁଦ୍ଧ ସମୟରେ ୪୩୫୦୦୦ ପର୍ଯ୍ୟନ୍ତ ହୋଇପାରୁଥିଲା ଏବଂ ଦରକାର ହେଲେ କୃଷକ-ମାନେ ହଳଲଙ୍ଗଳ ଛାଡ଼ି ଯୁଦ୍ଧକ୍ଷେତ୍ରରେ ଅସ୍ତ୍ରଧାରଣ କରୁଥିଲେ । ପ୍ରବଳ ପରାକ୍ରମଶାଳୀ ମୌର୍ଯ୍ୟ ସମ୍ରାଟ୍ ଚନ୍ଦ୍ରଗୁପ୍ତ ଯେପରି ନିଜର ସୁଶିକ୍ଷିତ ଏବଂ ଶକ୍ତିଶାଳୀ ସେନା ସାହାଯ୍ୟରେ ଗ୍ରୀକ୍‌ବୀର ସେଲ୍ୟୁକସ୍‌ଙ୍କୁ ଯୁଦ୍ଧରେ ପରାସ୍ତ କରି ତାଙ୍କୁ ଗଭୀର ଅପମାନ ଦେଇଥିଲେ ସେହିପରି ଓଡ଼ିଶାର ରାଜା ଅନଙ୍ଗଭୀମଦେବ ବଙ୍ଗର ମୁସଲମାନ ଶାସନକର୍ତ୍ତାମାନଙ୍କର ପୁନଃ ପୁନଃ ଆକ୍ରମଣକୁ ବ୍ୟର୍ଥ ଓ ଦଣ୍ଡ କରି ପାରୁଥିଲେ । ପୂର୍ବରୁ କୁହାଯାଇଅଛି ବଙ୍ଗର ଶେଷ ସ୍ୱାଧୀନ ରାଜା ଲକ୍ଷ୍ମଣସେନ ମୁସଲମାନମାନଙ୍କର ଆକ୍ରମଣ ଭୟରେ ପଳାଇ ଆସି ଅନଙ୍ଗଭୀମଦେବଙ୍କର ଆଶ୍ରୟ ଭିକ୍ଷା କଲେ । ଓଡ଼ିଶାର ରାଜାମାନେ ଚିରକାଳ ଅନାଥ, ଅସହାୟ ଓ ଦରିଦ୍ରଙ୍କୁ ଆଶ୍ରୟ ଓ ଅଭୟ ଦେବା ନିମନ୍ତେ ଚିରପ୍ରସିଦ୍ଧ । ଏହି ଲକ୍ଷ୍ମଣସେନ ତାଙ୍କ ଜୀବନର ଅବଶିଷ୍ଟ କାଳ ନିରାପଦରେ ସୁଖରେ ଯାପନ କରିଥିଲେ । ଏଥିପାଇଁ ମୁସଲମାନ-ମାନଙ୍କ ହୃଦୟରେ ପ୍ରତିହିଂସା ଅନଳ ଦାଉ ଦାଉ ହୋଇ ଜଳି ଉଠିଲା । ଅନଙ୍ଗ ଭୀମଦେବଙ୍କୁ ଶାସ୍ତି ଦେବା ନିମନ୍ତେ ସେମାନେ ବାରମ୍ବାର ଓଡ଼ିଶା ଆକ୍ରମଣ କଲେ । କିନ୍ତୁ ଓଡ଼ିଆ ସୈନିକମାନଙ୍କର

ଅସାମାନ୍ୟ ରଣନୈପୁଣ୍ୟରେ ମୁସଲମାନମାନଙ୍କର ସମସ୍ତ ପ୍ରକାର ଚେଷ୍ଟା ବ୍ୟର୍ଥ ହେଲା । ବଳବାନ ମଙ୍ଗୋଲମାନଙ୍କର ଆକ୍ରମଣରୁ ଖିଲ୍ ଚୋଣ ସାମ୍ରାଜ୍ୟକୁ ରକ୍ଷାକଲା ପରି ଅନଙ୍ଗଭୀମଦେବ ମୁସଲମାନ-ମାନଙ୍କର ଆକ୍ରମଣରୁ ଓଡ଼ିଆ ଜାତି ଓ ଓଡ଼ିଶା ସାମ୍ରାଜ୍ୟର ସ୍ୱାଧୀନତାକୁ ରକ୍ଷା କରିପାରିଥିଲେ । ବିହାର ଓ ବଙ୍ଗ ପ୍ରଭୃତି ପରାକ୍ରମ-ଶାଳୀ ସାମ୍ରାଜ୍ୟ ସବୁ ମୁସଲମାନମାନଙ୍କର ପଦାନତ ହେଉଥିଲେ ଉତ୍କଳ ଯେ ସ୍ୱୀୟ ଏକକ ନିଜର ବାହୁବଳରେ ଦେଶର ସ୍ୱାଧୀନତା ଅକ୍ଷୁଣ୍ଣ ରଖିପାରିଥିଲା ଏହା ଅନଙ୍ଗଭୀମଦେବଙ୍କ ପକ୍ଷରେ କମ୍ ଶ୍ଲାଘା ଓ ସାହସର ବିଷୟ ନୁହେ । ମୁସଲମାନମାନଙ୍କର ଭାରତ ଆକ୍ରମଣ ପୂର୍ବରୁ ମଗଧ ଥିଲା ସମଗ୍ର ଭାରତରେ ହିନ୍ଦୁସଭ୍ୟତା, ସଂସ୍କୃତି, ଧର୍ମ ଓ ଦର୍ଶନର ପିଠସ୍ଥଳୀ । ସେହି ପିଠସ୍ଥଳୀ ବର୍ତ୍ତମାନ ସ୍ଥାନା-ନ୍ତରିତ ହେଲା ଉତ୍କଳକୁ । ଭାରତର ଅନ୍ୟାନ୍ୟ ସାମ୍ରାଜ୍ୟମାନଙ୍କର ଭାଗ୍ୟ-ରବି ମୁସଲମାନ ଆକ୍ରମଣର ମହାସାଗରରେ ନିମଗ୍ନ ଓ ଲୀନ ହେଉଥିବେଳେ କେବଳ ଉତ୍କଳର ଭାଗ୍ୟ-ସହସ୍ରାଂଶୁ ସମଗ୍ର ଭାର-ତରେ ପ୍ରଚଣ୍ଡ ମାର୍ତ୍ତଣ୍ଡ କିରଣ ବିକିରଣ କରି ଓଡ଼ିଆ ଜାତିକୁ ନୁହେ ଭାରତର ଅନ୍ୟାନ୍ୟ ଜାତିଙ୍କୁ ମଧ୍ୟ ସେମାନଙ୍କ ଅନ୍ଧକାରରେ ଆଲୋକିତ କରିଥିଲା ।

ଅନଙ୍ଗଭୀମଦେବଙ୍କ ରାଜତ୍ୱକାଳରେ ଉତ୍କଳ ଅତୀବ ସମ୍ପଦ ଓ ବିଭବରେ ପୂର୍ଣ୍ଣ ରହିଥିଲା । ଏହାର ଜ୍ୱଳନ୍ତ ନିଦର୍ଶନ ଜଗନ୍ନାଥ-ଙ୍କର ସୁବିଶାଳ ପ୍ରକାଣ୍ଡ ମନ୍ଦିର ଓ ବାରବାଟୀ ଦୁର୍ଗର ଉତ୍ତୁଙ୍ଗ ନବତଳ ପ୍ରାସାଦ । ଅନଙ୍ଗଭୀମ ସିଂହାସନାରୋହଣ କରିବା ସଙ୍ଗେ ସଙ୍ଗେ ରାଜତ୍ୱର ୨ୟ ଅଙ୍କ ବା ପ୍ରଥମ ବର୍ଷରେ ଏହି ମନ୍ଦିର ନିର୍ମାଣ ଆରମ୍ଭ କଲେ । ନୀଳକଣ୍ଠ ରାଜଗୁରୁ ମହାମାନ୍ୟ ପରମହଂସ ବାଜ-ପେୟୀଙ୍କ ହସ୍ତରେ ମନ୍ଦିରନିର୍ମାଣ ଭାର ନ୍ୟସ୍ତ ଥିଲା । ନିର୍ମାଣ କାର୍ଯ୍ୟ

ନିମନ୍ତେ ୧୨ ଲକ୍ଷ ୫୦ ହଜାର ମାଢ଼ ସ୍ୱର୍ଣ୍ଣ ଏବଂ ଅଢ଼େଇଲକ୍ଷ ମାଢ଼ ସ୍ୱର୍ଣ୍ଣ ମୂଲ୍ୟର ଉତ୍ସାହ ବ୍ୟୟ କରାଯାଇଥିଲା । ୧୫ ବର୍ଷରେ ଅର୍ଥାତ୍ ୧୨୦୫ ଖ୍ରୀଷ୍ଟାବ୍ଦରେ ମନ୍ଦିର ନିର୍ମାଣ କାର୍ଯ୍ୟ ଶେଷ ହେଲା । ଅନଙ୍ଗଭୀମଦେବଙ୍କର ମୋଟ ରାଜସ୍ୱ ୫୭ ଲକ୍ଷ ୮୮ ହଜାର ମାଢ଼ ସୁନା ଥିଲା । ଏହାର ବର୍ତ୍ତମାନ ମୂଲ୍ୟ ପ୍ରାୟ ୪ କୋଟି ୪୩ ଲକ୍ଷ ଟଙ୍କା । ତାଙ୍କର ଭୂମି-ରାଜସ୍ୱ କେବଳ ୩୫ ଲକ୍ଷ ମାଢ଼ ସ୍ୱର୍ଣ୍ଣର ମୂଲ୍ୟ ୩ କୋଟି ୨୬ ଲକ୍ଷ ୮୦ ହଜାର ଟଙ୍କା ଥିଲା ।*

ଗଙ୍ଗାବଂଶର ସର୍ବପ୍ରଧାନ ରାଜା ନରସିଂହ ଦେବ ( ୧୨୨୮-୧୨୫୭ ) । ଓଡ଼ିଶା ସ୍ଥାପତ୍ୟର ଶ୍ରେଷ୍ଠ ନିଦର୍ଶନ କୋଣାର୍କ ମନ୍ଦିରର ନିର୍ମାତା ଏହି ଚିରସ୍ମରଣୀୟ ନରସିଂହ । ଯେତେ ଦିନ ଯାଏଁ ସୁବର୍ଣ୍ଣ-ପ୍ରସିଦ୍ଧ ମହୋଦଧି ତଟରେ ଧୂଣୀଯୋଗୀ ଚନ୍ଦ୍ରଭାଗା ତୀରରେ ସେହି ବିରାଟ ବାଲୁକା-ବେଳାନରେ କୋଣାର୍କର ଭଗ୍ନ ମାନ ପ୍ରସ୍ତର ଅବହେଳା ଭାବରେ ମୁଣ୍ଡା ପଡ଼ି ରହିଥିବ, ସେତେଦିନ ଯାଏଁ ନରସିଂହ ଦେବଙ୍କର ସ୍ମୃତି ପୂଜ୍ୟ ହୋଇ ଓଡ଼ିଆମାନଙ୍କ ହୃଦୟରେ ଜାଗରୂକ ଥିବ ଓ ପ୍ରତ୍ୟେକ ଓଡ଼ିଆ ପ୍ରାଣରେ ଗୌରବ ସଞ୍ଚାର କରୁଥିବ । କେବଳ ମନ୍ଦିର ନିର୍ମାଣରେ ନୁହେଁ, ସାମ୍ରାଜ୍ୟ ସ୍ଥାପନ ଦିଗରେ ମଧ୍ୟ ନରସିଂହ ପଟୁ ଓ ସିଦ୍ଧହସ୍ତ ଥିଲେ । ଖାରବେଳଙ୍କ ପରେ ସେ ଓଡ଼ିଶାର ସର୍ବପ୍ରଧାନ ଶକ୍ତିଶାଳୀ ସମ୍ରାଟ ଓ ଦିଗ୍ବିଜେତା । ଭାରତୀୟ ନେପୋଲିୟନ୍ ଗୁପ୍ତସମ୍ରାଟ୍ ସମୁଦ୍ରଗୁପ୍ତ ଏ ସମ୍ବନ୍ଧରେ ମଧ୍ୟ ତାଙ୍କ ସହିତ ତୁଳନୀୟ ନୁହନ୍ତି । ସମୁଦ୍ରଗୁପ୍ତ ଦାକ୍ଷିଣାତ୍ୟରେ ବହୁ ରାଜ୍ୟ ଜୟ କରିଥିଲେ ସତ୍ୟ, କିନ୍ତୁ ଶାସନାଧୀନରେ ରଖିପାରିନଥିଲେ ବୋଲି ସେହି ଛୋଟ ରାଜ୍ୟସବୁ

---

* ମିଃ ଡାହୁଲ ଲେଖା ପୃ. ୧୦୯ ଫୁଟନୋଟ ।

ନିଜ ସାମ୍ରାଜ୍ୟର ଅନ୍ତର୍ଭୁକ୍ତ କରି ନ ଥିଲେ । କିନ୍ତୁ ନରସିଂହ ଦ୍ୱିତୀୟ ଦାକ୍ଷିଣାତ୍ୟରେ ଯେଉଁ ଯେଉଁ ରାଜ୍ୟ ଜୟ କରିଥିଲେ, ସେଥୁ ସେହି ରାଜ୍ୟସବୁ ନିଜ ରାଜ୍ୟର ଅନ୍ତର୍ଗତ କରି ଉତ୍କଳ ସାମ୍ରାଜ୍ୟର ସୀମା ଦାକ୍ଷିଣାତ୍ୟରେ ବହୁତ ଦୂର ବଢ଼ାଇ ପାରିଥିଲେ । ଦକ୍ଷିଣ-ପଶ୍ଚିମ ଦିଗରେ ସେ କୋଲବର୍ଗ ଏବଂ ବିଦର ପର୍ଯ୍ୟନ୍ତ ବିଜୟ-ପତାକା ଉଡ଼ାଇଥିଲେ । ଅଧୁନିକ ବେରର ପ୍ରଦେଶ ସେତେବେଳେ ବିଦର ଥିଲା ଏବଂ କୋଲବର୍ଗ ରାଜ୍ୟ ଅନ୍ଧ୍ର ଓ ମହାରାଷ୍ଟ୍ର ଦେଶ ମଧ୍ୟରେ ବିଦରର ପଶ୍ଚିମ ଦିଗରେ ଥିଲା । ନରସିଂହ ସେହି ଉଭୟ ରାଜ୍ୟ ଜୟକରି ଉତ୍କଳର ଅନ୍ତର୍ଭୁକ୍ତ କରିଥିଲେ । 'କୋଲି' ନାମରେ ଗୋଟିଏ ରାଜ୍ୟ ବିଦରର ପଶ୍ଚିମରେ ଥିଲା । ନରସିଂହ ତାକୁ ମଧ୍ୟ ଜୟ କରିଥିଲେ । ନରସିଂହ ଦେବଙ୍କର ଏହି ଅଲୋକସାମାନ୍ୟ ରଣନୈପୁଣ୍ୟ ଓ ଅସୀମ ପରାକ୍ରମ ଦେଖି ଓଡ଼ିଶାର ଇତିହାସ-ଲେଖକମାନେ ମୁଗ୍ଧ ଓ ବିସ୍ମିତ ହୋଇ ଅଛନ୍ତି * । ନରସିଂହ ଦେବ ମଧ୍ୟ ବଙ୍ଗରାଜ୍ୟ ଆକ୍ରମଣକରି 'ଗୌଡ଼' ବା ପଶ୍ଚିମବଙ୍ଗର ରାଜଧାନୀ 'ଲକ୍ଷନୌତି' ଜୟ କଲେ । ଉତ୍କଳ ସୈନ୍ୟଙ୍କ ପ୍ରତାପରେ ସେହି ବିଜିତ ରାଜ୍ୟବାସୀଙ୍କ ମନରେ ଘୋର ଆତଙ୍କ ଉପସ୍ଥିତ ହେଲା । ଏହା ପରେ ୧୨୪୨ରୁ ୧୨୫୮ ଖ୍ରୀଷ୍ଟାବ୍ଦ ପର୍ଯ୍ୟନ୍ତ ବଙ୍ଗ ସୁଲତାନ ଇକ୍ତିଅରୁଦ୍ଦିନ ଉଜବକ ଏବଂ ଉତ୍କଳ-ବାସୀଙ୍କ ମଧ୍ୟରେ ତିନିବାର ଘୋର ଯୁଦ୍ଧ ହେଲା । ମାତ୍ର ପ୍ରତ୍ୟେକ

---

* 'The boldness and enterprise of the Orissan monarchs in those days, may surprise us when we consider the situation of Kolas in the heart of Central India, beyond Kalberga and Beder.' Sterling—Orissa. p. 76

ଦାର ମୁସଲମାନ ସୈନ୍ୟ ବହୁ ଧନ, ଜନ ଓ ହସ୍ତୀ ହରାଇ ପରାସ୍ତ ହୋଇଥିଲେ । ଏହାପରେ ଉତ୍ତର ଦକ୍ଷିଣ ଭାରତରେ ବହୁ ରାଜ୍ୟ ଜୟ କରି ସେ 'ବୀର ଶ୍ରୀ ଗଜପତି ଗୌଡ଼େଶ୍ୱର ନବକୋଟି-କର୍ଣ୍ଣାଟକଲବର୍ଗେଶ୍ୱର୍ବୀରାଧିବୀର ଭୂତ-ଭୈରବ-ଦେବ-ସାଧୁ-ଶାସନୋ-ତ୍କୀର୍ଣ୍ଣ ରାଉତରାୟ ଅତୁଲବଳପରାକ୍ରମ ସଂଗ୍ରାମସହସ୍ରବାହୁ କ୍ଷତ୍ରିୟକୁଳ-ଧୂମକେତୁ' ଉପାଧି ଗ୍ରହଣ କରିଥିଲେ ଏବଂ ତାଙ୍କର ପରବର୍ତ୍ତୀ ରାଜାମାନେ ଏହି ଉପାଧିରେ ଭୂଷିତ ହୋଇଥିଲେ । ସେତେବେଳେ ଉତ୍କଳ ଶୌର୍ଯ୍ୟ, ବୀର୍ଯ୍ୟ, ପରାକ୍ରମ, ତେଜ ଓ ବିକ୍ରମରେ ଏପରି ପୂର୍ଣ୍ଣ ରହିଥିଲା ଯେ ନରସିଂହ ଦେବ ତେଜ ଓ ଶକ୍ତିର ଦେବତା ସୂର୍ଯ୍ୟଙ୍କର ଆରାଧନା ନିମନ୍ତେ କୋଣାର୍କରେ ବିରାଟ ମନ୍ଦିର ନିର୍ମାଣ କରିଥିଲେ । ନରସିଂହ ଦେବ ଯୁଦ୍ଧ-ବିଦ୍ୟାରେ ଏତେ ନିପୁଣ ଓ ଅସ୍ତ୍ରକୌଶଳରେ ଏତେ ପାରଦର୍ଶୀ ଥିଲେ * ଯେ, ସେତେବେଳର ଶିଳ୍ପୀମାନେ ତାଙ୍କଠାରେ ଅତିମାନୁଷିକ ଶକ୍ତି ପ୍ରୟୋଗ କରି କୋଣାର୍କର ମନ୍ଦିର ଗାତ୍ରରେ ରାଜାଙ୍କର ଶରଭେଦ-କୌଶଳ ଓ ରଣ-ନୈପୁଣ୍ୟ ନାନାଭାବରେ ଖୋଦନ କରିଅଛନ୍ତି ।

ନରସିଂହ ଦେବଙ୍କ ମୃତ୍ୟୁପରେ ୯ ଜଣ ଦୁର୍ବଳ ରାଜା ଗଙ୍ଗ-ବଂଶରେ ରାଜତ୍ୱ କଲେ । ସେମାନେ ଦୁର୍ବଳ ଓ ନିସ୍ତେଜ ହେଲେ

* His ( ନରସିଂହଦେବ ) great personal strength and skill athletic exercises seem to have invested him with a sort of supernatural charactor in the eyes of his subjects······He is said to have been of a very martial turn, and to have waged a long war to the south-ward.—Sterling —Orissa, p. 93. Quoted in 'କୋଣାର୍କ' p. 25.

ମଧ୍ୟ ଅନଙ୍ଗ ଓ ନରସିଂହଙ୍କ ଦ୍ୱାରା ପରିକଳ୍ପିତ ଓ ପ୍ରତିପାଳିତ ସୁବିଶାଳ ସ୍ୱାଧୀନ ଉତ୍କଳ-ସାମ୍ରାଜ୍ୟକୁ ମୁସଲମାନମାନଙ୍କର ଘନ ଘନ ଆକ୍ରମଣ ସ୍ପର୍ଶ କରି ପାରିଲା ନାହିଁ । ଏହି ମୁସଲମାନମାନଙ୍କଠୁ ଓଡ଼ିଶା ଅନେକଙ୍କୁ ପରି, ବୀର୍ଯ୍ୟ ଓ ଶକ୍ତି କରି ଉତ୍କଳ ସାମ୍ରାଜ୍ୟକୁ ଅତୁଳ ବିରାଟ ଓ ବିଶାଳ କରିବା ନିମନ୍ତେ ଓଡ଼ିଶାରେ କପିଳେନ୍ଦ୍ର ଦେବ ଓ ପୁରୁଷୋତ୍ତମ ଦେବ ପ୍ରଭୃତି ମହାପ୍ରାଣ ରାଜାମାନଙ୍କର ଆବିର୍ଭାବ ହେଲା । ସେତେବେଳେ ଓଡ଼ିଶାର ସୌଭାଗ୍ୟ ଦିନ, ସମୃଦ୍ଧିର ସମୟ । ଭଗବାନ୍ ସେତେବେଳେ ଓଡ଼ିଆଙ୍କ ଉପରେ ସନ୍ତୁଷ୍ଟ ଓ ସଦୟ । ସେତେବେଳେ ଓଡ଼ିଶାର ଅଧୋଗତି ଓ ଅଧଃପତନ ଚିନ୍ତା କରନ୍ତା ?

ଗଙ୍ଗାବଂଶର ଶେଷ ରାଜାଙ୍କର ପୁତ୍ର ନ ଥିବାରୁ କପିଳେନ୍ଦ୍ର [illegible] ନାମକ ତାହାଙ୍କର ଜଣେ ବିଶ୍ୱାସୀ ଓ ବିଚକ୍ଷଣ ମନ୍ତ୍ରୀ ରାଜା ହେଲେ । କପିଳ ସୂର୍ଯ୍ୟବଂଶୀୟ କ୍ଷତ୍ରିୟ ଥିଲେ । ଗଙ୍ଗବଂଶୀୟ ଶେଷ ରାଜାଙ୍କ ମୃତ୍ୟୁ ପରେ ଦେଶର ପାତ୍ରମନ୍ତ୍ରୀମାନେ କପିଳେନ୍ଦ୍ର ଦେବଙ୍କୁ ଉପଯୁକ୍ତ ବିବେଚନା କରି ସିଂହାସନରେ ଅଭିଷିକ୍ତ କରାଇଲେ । ସେହି କପିଳେନ୍ଦ୍ର ଦେବଙ୍କଠାରୁ ଉତ୍କଳରେ ସୂର୍ଯ୍ୟବଂଶ ରାଜତ୍ୱ ଆରମ୍ଭ ହେଲା । ୧୩୫୭ ଶକାବ୍ଦ କକଡ଼ା ୨ ଦିନ ଶୁକ୍ଳ ଚତୁର୍ଥୀ ବୁଧବାର ଦିନ ତାଙ୍କର ଅଭିଷେକ ହୋଇଥିବାର ମାଦଳା ପାଞ୍ଜିରେ ଲେଖାଅଛି * । ସୂର୍ଯ୍ୟ ବଂଶର ପ୍ରଥମ ରାଜା କପିଳେନ୍ଦ୍ର ଦେବ ( ୧୪୩୫-୧୪୬୭ ଖ୍ରୀ ) ଏବେ ସୁଦ୍ଧା ଓଡ଼ିଶାର ସୁଦୂର ପଲ୍ଲୀ ପ୍ରାନ୍ତରରେ ସୁପରିଚିତ । 'କାଳିଆ କପିଳା ଭେଟ' ଜନଶ୍ରୁତି ଏବେ ସୁଦ୍ଧା ଲୋକଙ୍କ ମୁଖରୁ ଶୁଣାଯାଏ । ସାମାନ୍ୟ ଗୋପାଳ ବୃତ୍ତରୁ

* ୰ କୃପାସିନ୍ଧୁ ମିଶ୍ର—ଉତ୍କଳ ଇତିହାସ ପୃ ୧୨୪ ।

ନିଜର ସୌଭାଗ୍ୟ, ସାହସ, ପରାକ୍ରମ ଓ ପ୍ରତିଭା ବଳରେ କପିଳେନ୍ଦ୍ର ଦେବ ଅତି ଶୁଭ ମୁହୂର୍ତ୍ତରେ ଓଡ଼ିଶାର ସିଂହାସନରେ ଅଭିଷିକ୍ତ ହୋଇଥିଲେ । ନିଜର ଅସୀମ ବାହୁବଳ ଓ ଅମିତ ପରାକ୍ରମରେ ସେ ଦାକ୍ଷିଣାତ୍ୟରେ ପ୍ରଭୁତ୍ୱ ଓ ପ୍ରାଧାନ୍ୟ ବିସ୍ତାର କରି ଯାଇଥିଲେ । ଆପଣାର ଅଲୌକିକ ପ୍ରତିଭାବଳରେ ଉତ୍ତରରେ ଗଙ୍ଗା ନଦୀଠାରୁ ଦକ୍ଷିଣରେ ପାନାର ପର୍ଯ୍ୟନ୍ତ ସମଗ୍ର ଭୂଖଣ୍ଡର ସେ ଅପ୍ରତିଦ୍ୱନ୍ଦ୍ୱୀ ଅଧିନାୟକ ହୋଇ ପାରିଥିଲେ । ବର୍ତ୍ତମାନ ଗୁଣ୍ଟୁର, କୃଷ୍ଣା ଏବଂ ନେଲୋର ଜିଲ୍ଲାମାନଙ୍କରେ ତାହାଙ୍କର ଖୋଦିତ ଲିପି ମିଳୁଅଛି ।

କପିଳେନ୍ଦ୍ର ଦେବଙ୍କ ରାଜତ୍ୱ ଜୀବନବ୍ୟାପୀ ସଂଗ୍ରାମର ବିଚିତ୍ର ଘଟଣାରେ ପରିପୂର୍ଣ୍ଣ । କପିଳେନ୍ଦ୍ର ଦେବଙ୍କ ରାଜତ୍ୱ କାଳରେ ସୈନ୍ୟମାନଙ୍କର ବିଶ୍ରାମ ଓ ବିଶ୍ରାନ୍ତି ନ ଥିଲା । ଯୁଦ୍ଧ ଓ ରାଜ୍ୟଜୟ ଥିଲା ଯେପରି କପିଳେନ୍ଦ୍ର ଦେବଙ୍କର ଜୀବନର ବିଳାସ ଓ ଆମୋଦ । ବଙ୍ଗର ସୁଲତାନ ନାସିରୁଦ୍ଦିନ ମହମ୍ମଦ ଉତ୍କଳର ଉତ୍ତର ପ୍ରଦେଶ ଜୟ କରିବାକୁ ଚେଷ୍ଟା କରିଥିଲେ, କିନ୍ତୁ କପିଳେନ୍ଦ୍ର ତାହାଙ୍କର ଚେଷ୍ଟାକୁ ପଣ୍ଡ କରିଥିଲେ; ଏବଂ ମୁସଲମାନମାନେ କପିଳେନ୍ଦ୍ର ଦେବଙ୍କ ଦ୍ୱାରା ଏପରି କଠୋର ଶାସ୍ତି ପାଇଥିଲେ ଯେ ଅନେକ ବର୍ଷ ଧରି ବଙ୍ଗର ଶାସନକର୍ତ୍ତାମାନେ ଓଡ଼ିଶା ଆକ୍ରମଣ କରିବାକୁ ସାହସ କଲେ ନାହିଁ । ୧୪୫୬ ଖ୍ରୀଷ୍ଟାବ୍ଦରେ କପିଳେନ୍ଦ୍ର ନେଲୋର ଜିଲ୍ଲାର ଚନ୍ଦ୍ରଗିରି ଓ ଉଦୟଗିରି ରାଜ୍ୟ ଜୟ କଲେ । ଗଙ୍ଗବଂଶୀୟ ରାଜାମାନଙ୍କର ରାଜତ୍ୱକାଳରେ ଏହି ଦୁଇ ରାଜ୍ୟ ବିଜିତ ହୋଇଥିଲେ ମଧ୍ୟ କୌଣସି କୌଣସି ଗଙ୍ଗବଂଶୀୟ ରାଜାଙ୍କୁ ଦୁର୍ବଳ ଦେଖି ସେମାନେ ସ୍ୱାଧୀନତା ଘୋଷଣା କରିଥିଲେ । ୧୪୬୭ ଖ୍ରୀଷ୍ଟାବ୍ଦରେ ସେ କାବେରୀ ନଦୀ ତୀରବର୍ତ୍ତୀ କେରଳ ରାଜ୍ୟ ଜୟ କଲେ । ସେତେବେଳେ ଦାକ୍ଷିଣାତ୍ୟର ବିଜୟନଗର ରାଜ୍ୟ ଅତ୍ୟନ୍ତ

ଶକ୍ତିଶାଳୀ ଥାଇ ଶତ୍ରୁମାନଙ୍କ ହୃଦୟରେ ଭୟ ଜାତ କରୁଥିଲା । କିନ୍ତୁ ଅମିତତେଜା କପିଳେନ୍ଦ୍ରଦେବ କି ବିଜୟନଗର ରାଜାଙ୍କର ପରାକ୍ରମକୁ ଭୟ ଓ ଭ୍ରୂକ୍ଷେପ କରନ୍ତେ ? କେନ୍ଦୋର, ଚନ୍ଦ୍ରଗିରି ଓ ଉଦୟଗିରି ବିଜୟରେ ଉତ୍ସାହିତ ହୋଇ କପିଳେନ୍ଦ୍ରଙ୍କ ସୈନ୍ୟମାନେ ୧୪୫୭ ଖ୍ରୀଷ୍ଟାବ୍ଦରେ ବିଜୟନଗର ଅବରୋଧ ନିମନ୍ତେ ଯାତ୍ରା କଲେ । ବିଜୟନଗର ସୈନ୍ୟ ପରାସ୍ତ ହେଲେ ଏବଂ ପ୍ରବଳପ୍ରତାପୀ ବିଜୟନଗର ରାଜାଙ୍କର ପ୍ରଧାନ ସେନାପତି ଗୋପୀନାଥ ମଙ୍ଗରାଜ କପିଳେନ୍ଦ୍ରଦେବଙ୍କ ହସ୍ତରେ ବନ୍ଦୀ ହେଲେ । ଖାରବେଳଙ୍କ ପରି କପିଳେନ୍ଦ୍ର ଓଡ଼ିଶାର ଦ୍ୱିତୀୟ ନେପୋଲିୟନ୍ ଥିଲେ । ଭାରତ ଇତିହାସରେ ଗୁପ୍ତସାମ୍ରାଜ୍ୟର ଦ୍ୱିତୀୟ ସମ୍ରାଟ୍ ସମୁଦ୍ରଗୁପ୍ତଙ୍କୁ କେବଳ ଐତିହାସିକମାନେ 'ନେପୋଲିୟନ୍' ଉପାଧି ଦେଇ-ଅଛନ୍ତି, କିନ୍ତୁ ଓଡ଼ିଶାରେ ଗୋଟିକ ପରେ ଗୋଟିଏ କେତେ ଯେ ନେପୋଲିୟନ୍, ଅଲେକ୍‌ଜାଣ୍ଡର ଓ ଜୁଲିୟସ୍ ସିଜର ଜନ୍ମ ହୋଇ ସମସ୍ତ ଭାରତଭୂମିରେ ପ୍ରସିଦ୍ଧି ଲାଭ କରୁଥିଲେ ତାହାର ଖବର କିଏ ରଖୁଛି ?

ବିଜୟନଗର ସୈନ୍ୟଙ୍କର ପରାଜୟ ପରେ କପିଳେନ୍ଦ୍ରଦେବଙ୍କର ପ୍ରାଧାନ୍ୟ ଦାକ୍ଷିଣାତ୍ୟରେ ବୃଦ୍ଧିଭୂତ ହେଲା । କପିଳେନ୍ଦ୍ରଙ୍କର ପରାକ୍ରମ ଓ ତେଜରେ ସମସ୍ତ ଦାକ୍ଷିଣାତ୍ୟ ଭୂମି ଭୟରେ ଥରହର ହେଲା । ଦାକ୍ଷିଣାତ୍ୟର କ୍ଷୁଦ୍ର ବୃହତ୍ ଅନେକ ରାଜ୍ୟ କପିଳେନ୍ଦ୍ରଙ୍କର ବାହୁ-ଛାୟାତଳେ ଆଶ୍ରୟ ଇଚ୍ଛା କଲେ । ବିପଦ୍‌ଗ୍ରସ୍ତଙ୍କୁ ଆଶ୍ରୟ ଦେବାରେ, ଦୁଷ୍ଟଙ୍କୁ ଦମନ କରିବାରେ କପିଳେନ୍ଦ୍ର କଦାପି ପଶ୍ଚାତ୍‌ପଦ ନ ଥିଲେ । ବାହାମନୀ ରାଜ୍ୟର ସୁଲତାନ୍ ହୁମାୟୁନ୍ ସା ତେଲିଙ୍ଗାନାର ହିନ୍ଦୁ ରାଜାମାନଙ୍କୁ ବାରମ୍ବାର ପରାସ୍ତ କରି ସେ ରାଜ୍ୟରେ ନାନା

ଅଭ୍ୟାଗ୍ରହ କରୁଥିଲେ । ଗଙ୍ଗବଂଶୀୟ ନରସିଂହ ଦେବ ବାହାମନୀ ରାଜ୍ୟ ବିରୁଦ୍ଧରେ ଯୁଦ୍ଧଯାତ୍ରା କରି ବାହାମନୀ ସୈନ୍ୟଙ୍କୁ ପରାସ୍ତ କରିଥିବା କଥା ଆଗରୁ କୁହାଯାଇଅଛି । ସେହିପରି କପିଳେନ୍ଦ୍ର ଦେବ ବାହାମନୀର ସୁଲତାନ ମହମ୍ମଦ ନିଜାମ ସାହାଙ୍କୁ ଯୁଦ୍ଧରେ ପରାସ୍ତ କରି ଅମ୍ବର ରାୟଙ୍କୁ ତେଲିଙ୍ଗ ସିଂହାସନରେ ଅଭିଷିକ୍ତ କରାଇଲେ । ତେଲିଙ୍ଗାନା ଓଡ଼ିଶାର ମିତ୍ରରାଜ୍ୟରେ ପରିଣତ ହେଲା । ବାହାମନୀ ରାଜ୍ୟର କୋଣ୍ଡାପିଲି ଦୁର୍ଗ କପିଳେନ୍ଦ୍ର ଦେବଙ୍କର ହସ୍ତଗତ ହେଲା । ଇତମଧ୍ୟରେ ବିଜୟନଗର ରାଜା କପିଳେନ୍ଦ୍ରଙ୍କ ବିରୁଦ୍ଧରେ ଶତ୍ରୁତା ଆଚରଣ କରିବାରୁ ଓଡ଼ିଆ-ସୈନ୍ୟ ବିଜୟନଗର ବିରୁଦ୍ଧରେ ଅଭିଯାନ କଲେ । ଏହି ଯୁଦ୍ଧ-ଅଭିଯାନରେ କପିଳେନ୍ଦ୍ର ରାଜ୍ୟ ପରେ ରାଜ୍ୟ ଜୟ କରି ସେତୁବନ୍ଧ ରାମେଶ୍ୱର ପର୍ଯ୍ୟନ୍ତ ବିଜୟପତାକା ଉଡ଼ାଇଥିଲେ । ଜୀବନବ୍ୟାପୀ ଯୁଦ୍ଧ-ଅଭିଯାନ ଓ କ୍ଲାନ୍ତିର ଫଳରେ ଓଡ଼ିଶାର ବିଜୟୀ ସ୍ରଷ୍ଟା ଦ୍ୱିତୀୟ ନେପୋଲିୟନ୍ କପିଳେନ୍ଦ୍ର କୃଷ୍ଣା-ନଦୀକୂଳରେ ଢଳିପଡ଼ିଲେ । ଓଡ଼ିଶାର ଗୌରବ-ରବି ଅସ୍ତମିତ ହେଲା । କିନ୍ତୁ ଓଡ଼ିଆମାନଙ୍କର ପ୍ରାଧାନ୍ୟ ସମସ୍ତ ଦାକ୍ଷିଣାତ୍ୟ ଖଣ୍ଡରେ ସୁପ୍ରତିଷ୍ଠିତ ହେଲା । ନେପୋଲିୟନଙ୍କଦ୍ୱାରା ଅଧିକୃତ ରାଜ୍ୟ ତାଙ୍କରି ଜୀବତକାଳରେ ସ୍ୱାଧୀନ ହୋଇଥିଲା । କିନ୍ତୁ କପିଳେନ୍ଦ୍ର ଦେବଙ୍କର ବିଜିତ ରାଜ୍ୟସବୁ ପୁନର୍ବାର ଜୟ କରିବାକୁ ସେତେବେଳେ ଭାରତରେ କୌଣସି ରାଜା ନ ଥିଲେ । ଉତ୍ତରରେ ଦିଲ୍ଲୀର ସୁଲତାନଙ୍କ ପରି ଦକ୍ଷିଣରେ କପିଳେନ୍ଦ୍ର ଏକଚ୍ଛତ୍ର ଅଧିପତି ଥିଲେ । ଆଉ କେତେଦିନ ବଞ୍ଚି ରହିଥିଲେ କପିଳେନ୍ଦ୍ର, ଯେ ଦିଲ୍ଲୀର ସୁଲତାନଙ୍କୁ ପରାସ୍ତ କରି ସମଗ୍ର ଭାରତ-ଭୂମିରେ ଓଡ଼ିଶା-ସାମ୍ରାଜ୍ୟର ପ୍ରାଧାନ୍ୟ ବିସ୍ତାର କରି ନ ଥାନ୍ତେ ଏ କଥା କୁହାଯାଇ ନ ପାରେ । ସର୍ବଗ୍ରାସୀ କ୍ରୂର କାଳ ତାହା କରିଦେଲା ନାହିଁ ।

ସେତେବେଳେ କିଏ ସ୍ୱପ୍ନରେ ସୁଦ୍ଧା ଭାବିଥିଲା ଓଡ଼ିଶାର ଅଧୋଗତିର ସମୟ ଏତେ ନିକଟରେ ?

କପିଳେନ୍ଦ୍ର ଦେବଙ୍କର ଉତ୍ତରାଧିକାରୀ 'କାଞ୍ଚିବିଜେତା' ପୁରୁଷୋତ୍ତମ ଦେବ (୧୪୬୭-୧୪୯୭) ଖ୍ରୀଷ୍ଟାବ୍ଦ ଏବେ ବି ଓଡ଼ିଶାର ଘରେ ଘରେ ସୁପରିଚିତ । କର୍ଣ୍ଣାଟପ୍ରଦେଶର କାଞ୍ଚି, ଅଧୁନିକ କଞ୍ଜିଭେରମ୍ ଜୟ କରି ପୁରୁଷୋତ୍ତମ କାଞ୍ଚିଜେତା ପଦ୍ମାବତୀଙ୍କ ସହ ତତ୍ରସ୍ଥ ସାକ୍ଷୀଗୋପାଳ ଓ ଗଣେଶମୂର୍ତ୍ତିଙ୍କୁ ଓଡ଼ିଶାକୁ ଆଣିଥିଲେ । ସାକ୍ଷୀଗୋପାଳଙ୍କୁ କଟକବାଟୀ ଦୁର୍ଗ ମଧ୍ୟରେ ରଖାଇଲେ । ଗଣେଶମୂର୍ତ୍ତି ପୁରୀ ମନ୍ଦିର ମଧ୍ୟରେ ସ୍ଥାପିତ ହେଲେ । 'ଚୈତନ୍ୟଚରିତାମୃତ'ରେ ଲେଖା ଅଛି—

"ଏଇମତ ବିଦ୍ୟାନଗରେ ସାକ୍ଷୀଗୋପାଳ
ସେବା ଅଙ୍ଗୀକାର କରିଯାଛେନ ଚିରକାଳ ।
ଉତ୍କଳେର ରାଜା ଶ୍ରୀପୁରୁଷୋତ୍ତମ ନାମ
ସେଇ ଦେଶ ଜିନିଲେନ କରିଯା ସଂଗ୍ରାମ ।
ସେଇ ରାଜା ଜିନି ନିଲ ତାର ସିଂହାସନ
ମାଣିକ୍ୟ ସିଂହାସନ ନାମ ଅନେକ ରତନ ।
× × × ×
ତାର ଭକ୍ତିବଶେ ଗୋପାଳ ଆଜ୍ଞା ଦିଲ
ଗୋପାଳ ଲଇଯା ସେଇ କଟକ ଆଇଲ ।
ଜଗନ୍ନାଥେ ଆଣି ଦିଲ ମାଣିକ୍ୟ ସିଂହାସନ
କଟକେ ଗୋପାଳ ସେବା କରିଲ ସ୍ଥାପନ ।"*

ଏଥିରୁ ଜଣାଯାଏ, ପୁରୁଷୋତ୍ତମ ଦେବ କାଞ୍ଚି ରାଜାଙ୍କର ରାଜଧାନୀ ବିଦ୍ୟାନଗରକୁ ଧ୍ୱଂସ କରି, ରାଜାଙ୍କୁ ପରାସ୍ତ ଓ ନିହତ କରି

* The Prachi—Vol 2,-part I, p. 5-6.

ଓଡ଼ିଶାକୁ ସାକ୍ଷୀଗୋପାଳ ମୂର୍ତ୍ତି, ଗଣେଶ ମୂର୍ତ୍ତି ଓ ମାଣିକ୍ୟ ସିଂହାସନ ନେଇ ଆସିଥିଲେ ଏବଂ ସାକ୍ଷୀଗୋପାଳ ମୂର୍ତ୍ତିକୁ ବାରବାଟୀ ଦୁର୍ଗରେ ରଖାଇଥିଲେ । ପୁରୁଷୋତ୍ତମ ଦେବ କର୍ଣ୍ଣାଟ ଜୟ କରିଥିବାରୁ "ନବକୋଟି କର୍ଣ୍ଣାଟକଲବର୍ଗେଶ୍ୱର" ଉପାଧିରେ ଭୂଷିତ ହୋଇଥିଲେ । ନବକୋଟି ଅର୍ଥ ଏଠାରେ ନୂତନ ସୀମା ।

ପୁରୁଷୋତ୍ତମ ଦେବଙ୍କ ପୁତ୍ର ପ୍ରତାପରୁଦ୍ର ଦେବଙ୍କ ସମୟରେ (୧୦୯୫-୧୫୩୨ ଖ୍ରୀ: ଅ:) ସମଗ୍ର ଉତ୍କଳଭୂମିରେ ବୈଷ୍ଣବ-ଧର୍ମ ଉଚ୍ଛ୍ୱସିତ ବନ୍ୟା ପରି ପ୍ରବଳ ବେଗରେ ମାଡ଼ିଆସିଥିଲା । ବୈଷ୍ଣବ-ଧର୍ମ ପ୍ରଚାରକ ଶ୍ରୀଚୈତନ୍ୟ ଏହି ସମୟରେ ପୁରୀକୁ ଆସି ପ୍ରେମ ଓ ଭକ୍ତିରେ ଓଡ଼ିଶାକୁ ପ୍ଲାବିତ କରିଦେଲେ । ସେତେବେଳେ ଯେ ନରନାରୀମାନେ ନୂତନ ମନ୍ତ୍ରରେ ଦୀକ୍ଷିତ ହୋଇ ଚୈତନ୍ୟ ଭକ୍ତିଭାବରେ ବ୍ୟାକୁଳ ଓ ଚଞ୍ଚଳ ହୋଇ ଛୁଟିଲେ ତାହାର ଇୟତ୍ତା ନାହିଁ । ଦେଶରେ ଏକ ନୂତନ ଧର୍ମ, ନୂତନ ଭାବ ଓ ନବ ଆଦର୍ଶର ତରଙ୍ଗ ଖେଳିଗଲା । ଅସ୍ପୃଶ୍ୟ କଳଙ୍କ ସ୍ପର୍ଶ ଭୁଲିଯାଇ ଲୋକେ ଶ୍ରୀକୃଷ୍ଣଙ୍କର କୋମଳ ମଧୁର ନାମରେ ମନ, ଧନ ସବୁ ସମର୍ପଣ କରିଦେଇଥିଲେ । ସ୍ୱୟଂ ପ୍ରତାପରୁଦ୍ର ଦେବ ନାମର ପ୍ରଭାବ ଓ ମହିମା ବଳରେ ମୁସଲମାନ ମାନଙ୍କର ଘନ ଘନ ଆକ୍ରମଣକୁ ବ୍ୟର୍ଥ କରିଥିଲେ ସୁଦ୍ଧା ଚୈତନ୍ୟଙ୍କ ମତବାଦୀରେ ବୈଷ୍ଣବ ଧର୍ମର ସଂସ୍ପର୍ଶରେ ଆସି ଏହି ସମୟଠାରୁ ଓଡ଼ିଶାର ରାଜନୈତିକ ଅଧଃପତନର ସୂତ୍ରପାତ ହେଲା । ସ୍ୱଜାତିରେ ଧର୍ମର ଅନ୍ଧବିଶ୍ୱାସ ଦେଇ ଦେଶର ଅଧଃପତନ ହୁଏ—ଏହି ସତ୍ୟ, ଇତିହାସ, ସବୁ ଦେଶରେ ଓ ସବୁ କାଳରେ ଘୋଷଣା କରି ଆସୁଅଛି । ଓଡ଼ିଶାର ରାଜନୀତି ସହିତ ପ୍ରତାପରୁଦ୍ର ଦେବଙ୍କର ବୈଷ୍ଣବଧର୍ମ ଜଡ଼ିତ ହେବାରୁ ଦେଶର ରାଜନୈତିକ ଅଧଃପତନ ଅନିବାର୍ଯ୍ୟ ହୋଇ ଉଠିଲା । ଇଂଲଣ୍ଡରେ ଏହି ଧର୍ମବିପ୍ଳବରୁ ଶତ ଶତ ଲୋକଙ୍କର

ଜୀବନନାଶର କାରଣ ହୋଇଥିଲା ଓ ଏଥିପାଇଁ ୧୫୮୧ ରେ ଅନ୍ତର୍ବିବାଦର ସୃଷ୍ଟି । ଯେଉଁ ମୌର୍ଯ୍ୟ ସାମ୍ରାଜ୍ୟ ଚନ୍ଦ୍ରଗୁପ୍ତଙ୍କ ରାଜତ୍ୱରେ ଏତେ ପରାକ୍ରାନ୍ତ ଓ ଭାରତବ୍ୟାପୀ ହୋଇ ଉଠିଥିଲା ତାହାର ପତନ ଓ ଧ୍ୱଂସର କାରଣ ଅଶୋକଙ୍କର ପ୍ରଗୃହୀତ ବୌଦ୍ଧ-ଧର୍ମ । ଏ ଧର୍ମ ଅହିଂସାମୂଳକ । ସୁତରାଂ ଲୋକଙ୍କର ସମର-କୁଶଳତାରେ ଏହା କୁଠାରାଘାତ କଲା । ପ୍ରେମ-ଭକ୍ତିମୂଳକ ବୈଷ୍ଣବଧର୍ମକୁ ଓଡ଼ିଶାର ପ୍ରଧାନ ଧର୍ମରୂପେ ଗ୍ରହଣ କରି ପ୍ରତାପ-ରୁଦ୍ର ଦେବ ଓ ତାଙ୍କର ମନ୍ତ୍ରୀ ରାୟ ରାମାନନ୍ଦ ଅଶୋକଙ୍କ ପରି, ସୁବିଶାଳ ଉତ୍କଳ ସାମ୍ରାଜ୍ୟର ପତନର ବୀଜ ବପନ କଲେ ।

ଓଡ଼ିଶାର ଇତିହାସ ଲେଖକ ସ୍ୱର୍ଗୀୟ ରାଖାଲ ଦାସ ବାନାର୍ଜି ତାଙ୍କର ସୁପ୍ରସିଦ୍ଧ 'ଉତ୍କଳ-ଇତିହାସ'ରେ ଏହି ପ୍ରସଙ୍ଗର ଅବତାରଣା କରି ଉଲ୍ଲେଖ କରିଅଛନ୍ତି ଯେ ଚୈତନ୍ୟଙ୍କର ବୈଷ୍ଣବଧର୍ମ ପ୍ରଚାର ଓଡ଼ିଶାର ସ୍ୱାଧୀନତା ଲୋପର ପ୍ରଧାନ କାରଣ । * ତାଙ୍କର ମତକୁ ଦୃଢ଼ କରିବା ନିମନ୍ତେ ସ୍ୱର୍ଗୀୟ ବାନାର୍ଜି କହନ୍ତି, ଶ୍ରୀଚୈତନ୍ୟ ନିଜେ ଉତ୍କଳର ରାଜନୀତିରେ ହସ୍ତକ୍ଷେପ କରି ଏ ଦେଶର ରାଜନୈତିକ ଓ ସାମରିକ ଅଧଃପତନର କାରଣ ହେଲେ । ସେ ନିଜେ ବଙ୍ଗର ସୁଲତାନ୍ ହୋସେନଙ୍କ ବିରୁଦ୍ଧରେ ଯୁଦ୍ଧଯାତ୍ରା କରିବାରୁ ପ୍ରତାପ-ରୁଦ୍ରଙ୍କୁ ନିଷେଧିଥିଲେ । ରାୟ ରାମାନନ୍ଦଙ୍କର ଭ୍ରାତା ଗୋପୀନାଥ ମାଳଝିଆଠାର ( ମେଦିନୀପୁର ) ଶାସନକର୍ତ୍ତା ଥିଲେ । ସେ ରାଜସ୍ୱ

---

* The verdict of late Mr. R. D. Banerjee of Mohenjodaro fame that Chaitanya's coming to Orissa was a disaster, is perfectly justified"—The Prachi, Vol 2, part II, p. 10.

ଅସ୍ୱୀକାର କରିଥିବାରୁ ମୃତ୍ୟୁଦଣ୍ଡରେ ଦଣ୍ଡିତ ହୋଇଥିଲେ । ତେଣୁ ଶ୍ରୀ-ଚୈତନ୍ୟଙ୍କ ଶିଷ୍ୟମାନଙ୍କର ଉପଦେଶ ଫଳରେ ପ୍ରତାପରୁଦ୍ର ଦଣ୍ଡରୁ ଅବ୍ୟାହତି ଦେଇ ଗୋପୀନାଥଙ୍କୁ ପୁନର୍ବାର ସେହି ପଦରେ ନିଯୁକ୍ତ କଲେ । ଏହା ଫଳରେ ନିଶ୍ଚୟ ରାଜ୍ୟଶାସନରେ ବିଶୃଙ୍ଖଳା ଜନ୍ମିଥିବ । ତାଙ୍କର ମଧ୍ୟ ଉକ୍ତ, ରାୟ ରାମାନନ୍ଦ ବୈଷ୍ଣବଧର୍ମରେ ଦୀକ୍ଷିତ ହୋଇ ପୁରୀରେ ରାଜାଙ୍କ ସହିତ ଧର୍ମ-ଜୀବନ ଯାପନ କରିବା ଉଦ୍ଦେଶ୍ୟରେ ଗୋଦାବରୀ ପ୍ରଦେଶର ଶାସକପଦ ପରିତ୍ୟାଗ କରିବାରୁ ସୁଦୂର ଦାକ୍ଷିଣାତ୍ୟରେ ଓଡ଼ିଆ ରାଜାମାନଙ୍କର ପ୍ରାଧାନ୍ୟର ହ୍ରାସ ହେଲା ଏବଂ ଗୋଦାବରୀର ଦକ୍ଷିଣବର୍ତ୍ତୀ ସମସ୍ତ ଓଡ଼ିଆ ରାଜ୍ୟ ବିଜୟନଗରର ରାଜା କୃଷ୍ଣଦେବ ରାୟଙ୍କର ହସ୍ତଗତ ହେଲା ।* ଅବଶ୍ୟ ଏ ମତରେ କେତେଦୂର ଐତିହାସିକ ସତ୍ୟ ଅଛି ତାହା ବିଚାର କରିବାର କଥା । ମାତ୍ର ଇତିହାସରୁ ପ୍ରମାଣ ମିଳେ ଯେ, ପ୍ରତାପରୁଦ୍ରଙ୍କ ସମୟରେ ମୁସଲମାନମାନେ ଓଡ଼ିଶାକୁ ବାରମ୍ବାର ଆକ୍ରମଣ କଲେ । ବିଜୟନଗରର ପ୍ରବଳପରାକ୍ରାନ୍ତ ରାଜା କୃଷ୍ଣରାୟଙ୍କୁ ଯୁଦ୍ଧରେ ପରାସ୍ତ କରି ନ ପାରି ପ୍ରତାପରୁଦ୍ରଦେବ ତାଙ୍କ ସଙ୍ଗେ ସନ୍ଧି ସ୍ଥାପନ କରିଥିଲେ । ଯୁଦ୍ଧରେ ପରାଜିତ ହୋଇ ସନ୍ଧି ସ୍ଥାପନ କରିବା ପ୍ରତାପରୁଦ୍ର ଦେବଙ୍କ ଛଡ଼ା ଗଙ୍ଗବଂଶୀୟ କିମ୍ବା ସୂର୍ଯ୍ୟବଂଶୀୟ ଆଉ କୌଣସି ରାଜା ସ୍ୱପ୍ନରେ ସୁଦ୍ଧା କଳ୍ପନା କରି ନ ଥିଲେ । ଏହି ସନ୍ଧି ଅନୁସାରେ କୃଷ୍ଣାନଦୀର ଦକ୍ଷିଣାଞ୍ଚଳବର୍ତ୍ତୀ ରାଜ୍ୟମାନଙ୍କରୁ ଉତ୍କଳ ଗଜପତିଙ୍କର ପ୍ରଭୁତ୍ୱ ଅପସାରିତ ହେଲା,† ଏବଂ ଓଡ଼ିଆ-

---

* The Ravenshavian Diamond Jubilee No. 1936. 'Connections of Sree Chaitanya with Orissa' p. 17

† ୮ କୃପାସିନ୍ଧୁ ମିଶ୍ର—ଉତ୍କଳ ଇତିହାସ ପୃ ୧୯୧ ।

ମାନଙ୍କର ରାଜନୈତିକ ଅଧଃପତନର ସୂତ୍ରପାତ ହେଲା । ଓଡ଼ିଶାର ଶେଷ ସ୍ୱାଧୀନ ରାଜା 'ତେଲେଙ୍ଗା ମୁକୁନ୍ଦଦେବ'ଙ୍କ ସମୟରେ (ଖ୍ରୀଷ୍ଟ ୧୫୫୯-୧୫୬୮ ଇଃ) ଉତ୍କଳର ସ୍ୱାଧୀନତା ଲୋପ ପାଇଲା । ଦକ୍ଷିଣରୁ ଗୋଲକୁଣ୍ଡାର ସୁଲତାନ ଇବ୍ରାହିମ ଓ ଉତ୍ତରରୁ କଳା-ପାହାଡ଼ ଓଡ଼ିଶାକୁ ପୁନଃ ପୁନଃ ଆକ୍ରମଣ କରି ଏ ଦେଶର ମେରୁଦଣ୍ଡ ଭାଙ୍ଗିଦେଲେ । କପିଳେନ୍ଦ୍ରଦେବ ଓ ପୁରୁଷୋତ୍ତମ ଦେବଙ୍କ ସମୟରେ ଯେଉଁ ମୁସଲମାନମାନେ କରଯୋଡ଼ି ପ୍ରାଣଭୟରେ ଓଡ଼ିଶାରୁ ପଳାୟନ କରୁଥିଲେ ସେମାନେ ମୁକୁନ୍ଦଦେବଙ୍କ ସମୟରେ ଓଡ଼ିଶା ଜୟ କଲେ । ଦେଶରେ ଅନ୍ତର୍ବିପ୍ଳବ ଫଳରେ ମୁକୁନ୍ଦଦେବ ୧୫୬୮ ଖ୍ରୀଷ୍ଟାବ୍ଦରେ ଶତ୍ରୁର ଅସ୍ତ୍ରାଘାତରେ ପ୍ରାଣ ହରାଇଲେ । ତାହାଙ୍କ ମୃତ୍ୟୁ ସଙ୍ଗେ ସଙ୍ଗେ ଉତ୍କଳଗଗନରୁ ସ୍ୱାଧୀନତା-ରବି ଚିରକାଳ ନିମନ୍ତେ ଅସ୍ତମିତ ହେଲା । କଳାପାହାଡ଼ର ଅମାନୁଷିକ ଅତ୍ୟାଚାରରେ କେତେ ଯେ ଦେବମୂର୍ତ୍ତି ଭାଙ୍ଗିଲା, କେତେ ଯେ ଦେବ-ଦେଉଳ ଧ୍ୱଂସ ହେଲା, କେତେ ମହାପ୍ରାଣୀଙ୍କର ଯେ ଧର୍ମନାଶ ହେଲା ତାହା ଏବେ ସୁଦ୍ଧା ଲୋକମାନଙ୍କ ସ୍ମୃତିରେ ଜାଗରୁକ ଅଛି । ଏହାପରେ ଖ୍ରୀଷ୍ଟ ଷୋଡ଼ଶ ଶତାବ୍ଦୀରେ ଉତ୍କଳର ସ୍ୱାଧୀନତା ହରାଇ ଉତ୍କଳ ଦୁଇଶହ ବର୍ଷ ପର୍ଯ୍ୟନ୍ତ ମୋଗଲ, ମରହଟ୍ଟା ଓ ଇଂରେଜମାନଙ୍କର ଶାସନାଧୀନରେ ରହିଲା ଏବଂ ଏହି ବହୁ ବର୍ଷବ୍ୟାପୀ ପରାଧୀନତା ଫଳରେ ଆଜି ଓଡ଼ିଶାର ଲୋକେ ଏତେ ନିର୍ଜୀବ, ଏତେ ପରମୁଖାପେକ୍ଷୀ, ଏତେ ନିରୁତ୍ସାହୀ ଏବଂ ଏତେ ଅଦୃଷ୍ଟବାଦୀ !!!

---

## କଳିଙ୍ଗର ନୌବାଣିଜ୍ୟ

ପ୍ରାଚୀନ ଉତ୍କଳର ନୌବାଣିଜ୍ୟ ଅତି ଇତିହାସ ପ୍ରସିଦ୍ଧ । ପ୍ରାଚୀନ ଉତ୍କଳୀୟମାନେ ସୁବୃହତ୍ ବୃହତ୍ ଜାହାଜ ନିର୍ମାଣ କରି

ସୁଦୂରଜାଭା, ସୁମାତ୍ରା, ବ୍ରହ୍ମଦେଶ, ଚୀନ, ଜାପାନ ଓ ମାଡ଼ା-ଗାସ୍କାର ପ୍ରଭୃତି ଦେଶ ସହିତ କେବଳ ଯେ ବାଣିଜ୍ୟ କରୁଥିଲେ ତାହା ନୁହେଁ, ଅନେକ ଅଗାଧ ପାରାବାରର ପରପାରରେ ଉପନିବେଶ ସ୍ଥାପନ କରି କଳିଙ୍ଗର ଜାତୀୟ ସଭ୍ୟତା ଓ ସଂସ୍କୃତିର ପ୍ରଭାବ ମଧ୍ୟ ସେଠାରେ ବିସ୍ତାର କରି ପାରିଥିଲେ । ଏହା ତାହାଙ୍କ କପୋଳ-କଳ୍ପନା ନୁହେଁ କିମ୍ବା ଭିତ୍ତିହୀନ ଅସାର କଥାବସ୍ତୁ ନୁହେଁ । ଐତିହାସିକମାନେ ଏ ବିଷୟରେ ଏକମତ ଏବଂ ଏବେ ସୁଦ୍ଧା କଳିଙ୍ଗ-ସଭ୍ୟତାର ସ୍ମୃତିଚିହ୍ନ ସେହି ଦେଶମାନଙ୍କରେ ଦେଖାଯାଏ । ଖ୍ରୀଷ୍ଟ ସପ୍ତଦଶ ଶତାବ୍ଦୀରେ ଯେପରି ଇଂଲଣ୍ଡର ପ୍ରଜାମାନଙ୍କଦ୍ୱାରା ନିର୍ଯ୍ୟାତିତ ହୋଇ ପ୍ୟୁରିଟାନ୍‌ମାନେ ଦଳ ଦଳ ହୋଇ ଜନ୍ମଭୂମି ପରିତ୍ୟାଗ କରି ସୁଦୂର ଆମେରିକାରେ ଉପନିବେଶ ସ୍ଥାପନ କରିଥିଲେ, ସେହିପରି ଖ୍ରୀଷ୍ଟପୂର୍ବ ପଞ୍ଚମ ଓ ଚତୁର୍ଥ ଶତାବ୍ଦୀରେ ବୌଦ୍ଧଧର୍ମର ସର୍ବଗ୍ରାସୀ ପ୍ରବଳ କବଳରୁ ନିଜର ଧର୍ମକୁ ରକ୍ଷା କରିବା ନିମନ୍ତେ ଏ ଦେଶର ହିନ୍ଦୁମାନେ ନିଜ ନିଜର ଧର୍ମଶାସ୍ତ୍ର ସହିତ ଜାଭା, ସୁମାତ୍ରା ପ୍ରଭୃତି ସୁଦୂର ଦେଶକୁ ପଳାୟନ କରିଥିଲେ । ହିନ୍ଦୁମାନଙ୍କର କେତେକ ପ୍ରାଚୀନ ଧର୍ମଶାସ୍ତ୍ର ଏବେ ସୁଦ୍ଧା ଜାଭା, ସୁମାତ୍ରା ପ୍ରଭୃତି ଦ୍ୱୀପରେ ଦେଖାଯାଏ । ଜାଭା ନିକଟବର୍ତ୍ତୀ ବାଲି-ଦ୍ୱୀପରୁ ଏବେସୁଦ୍ଧା ସଂସ୍କୃତ ଗ୍ରନ୍ଥମାନ ମିଳୁଅଛି । ସ୍ୱର୍ଗୀୟ ମନସ୍ୱୀ ବାଳଗଙ୍ଗାଧର ତିଳକ ବାଲିଦ୍ୱୀପରୁ କେଣ୍ଡିଏ ଶ୍ରୀମଦ୍‌ଭଗବଦ୍‌ଗୀତା ପାଇଥିଲେ ।

ପ୍ରାଚୀନ କଳିଙ୍ଗର ଭୌଗୋଳିକ ଅବସ୍ଥା ଆଲୋଚନା କଲେ ଦେଖାଯାଏ, ଯେପରି ନୌବାଣିଜ୍ୟରେ ପ୍ରସିଦ୍ଧ ଓ ଗୌରବ ଅର୍ଜ୍ଜନ କରିବା ନିମନ୍ତେ ଏହି ଓଡ଼ିଆ ଜାତିକୁ ବିଧାତା ସୃଷ୍ଟି କରିଥିଲେ । ଇଂଲଣ୍ଡ ଯେ ଅଳ୍ପକାଳ ମଧ୍ୟରେ ପୃଥିବୀରେ ସର୍ବଶ୍ରେଷ୍ଠ 'ନାବିକଜାତି'

ବୋଲି ସୁଖ୍ୟାତି ଅର୍ଜ୍ଜନ କରିପାରିଥିଲା, ଏହାର ମୂଳମନ୍ତ୍ର ନିହିତ ଥିଲା ତାହାର ଅନନ୍ତସାଗରବାରିବେଷ୍ଟିତ ଚତୁଃସୀମାରେ । ବେଷ୍ଟନୀ ଓ ପାରିପାର୍ଶ୍ୱିକ ଅବସ୍ଥାର ପ୍ରଭାବ କୌଣସି ଜାତି କିମ୍ବା ବ୍ୟକ୍ତିଙ୍କୁ ପଙ୍ଗୁ କରି ଦେଇ ନ ପାରେ । ସମୁଦ୍ରତୀରରେ ବାସ କରି, ସର୍ବଦା ସମୁଦ୍ର ପଥରେ ବୈଦେଶିକ ଆକ୍ରମଣରୁ ନିଜକୁ ମୁକ୍ତ କରିବା ନିମନ୍ତେ ସାବଧାନ ଓ ଯତ୍ନବାନ୍ ଥାଇ ଇଂଲଣ୍ଡୀୟମାନେ କାଳ-କ୍ରମେ ପୃଥିବୀରେ ଏକ ପ୍ରଧାନ 'ନାବିକ ଜାତି' ରୂପେ ପରିଗଣିତ ହେଲେ । ପ୍ରାଚୀନକାଳରେ ବଙ୍ଗୋପସାଗରର ପୂର୍ବକୂଳରେ ଗଙ୍ଗାନଦୀର ଉପତ୍ୟକାଠାରୁ ଦାକ୍ଷିଣାତ୍ୟର ଗୋଦାବରୀନଦୀ ପର୍ଯ୍ୟନ୍ତ ଯେଉଁ ବିସ୍ତୃତ ଓ ବିଶାଳ ଭୂଖଣ୍ଡ ଥିଲା ତାହାକୁ କଳିଙ୍ଗ କୁହାଯାଉଥିଲା * । କୌଣସି କୌଣସି ଗଜପତିଙ୍କ ରାଜତ୍ୱକାଳରେ କଳିଙ୍ଗର ଦକ୍ଷିଣ ସୀମା କୃଷ୍ଣା ଓ କାବେରୀ ନଦୀ କୂଳ ପର୍ଯ୍ୟନ୍ତ ବ୍ୟାପି ଯାଇଥିଲା † । ସମୁଦ୍ର ଉପକୂଳରେ ଥାଇ, ସମୁଦ୍ର ବାୟୁମଣ୍ଡଳରେ ଲାଳିତପାଳିତ ହୋଇ କଳିଙ୍ଗବାସୀମାନେ ଯେ ଅତି ପ୍ରାଚୀନ-କାଳରୁ ଜଳ-ବାଣିଜ୍ୟରେ ପ୍ରସିଦ୍ଧି ଲାଭ କରିଥିଲେ ଏଥିରେ ସନ୍ଦେହ କରିବାର କୌଣସି କାରଣ ନାହିଁ ।

---

* 'The vast country on the eastern shores of the Bay of Bengal which extended from the delta of the Ganges to that of the Godavari was called Kalinga in ancient times'—R. D. Banerjee 'History of Orissa' Vol 1.

† ×× which ( Kalinga ) extended from the mouth of the Ganges to the mouth of the Krishna. —Radhakumud Mookherjee—'Indian shipping,'

କଳିଙ୍ଗର ବିଭବ ଓ ସମୃଦ୍ଧି ମହାଭାରତ ଯୁଗରୁ ପ୍ରସିଦ୍ଧି ଲାଭ କରିଥିଲା । ଉତ୍କଳ 'ପୁଣ୍ୟଭୂମି' ବୋଲି ଅତି ପ୍ରାଚୀନକାଳରୁ ସୁଖ୍ୟାତି ଅର୍ଜନ କରି ଆସିଅଛି * । ମହାଭାରତର କୁରୁପାଣ୍ଡବ ଯୁଦ୍ଧରେ କଳିଙ୍ଗ ସେନା କୌରବ ପକ୍ଷରେ ଯୁଦ୍ଧ କରିଥିଲେ । କଳିଙ୍ଗରୁ ୬୦ ହଜାର ରଥ ଏବଂ ପଦାତି ସମେତ ୧୦ ହଜାର ପ୍ରକାଣ୍ଡକାୟ ହାତୀ ଯାଇ ମହାଭାରତ ଯୁଦ୍ଧରେ ଯୋଗ ଦେଇଥିଲେ । ଯେଉଁ ମହାରଥୀମାନେ ଭୀଷ୍ମଙ୍କ ଆଗେ ଆଗେ ରହି ଯୁଦ୍ଧ କରୁଥିଲେ କଳିଙ୍ଗ ରାଜା ସେମାନଙ୍କର ଅଗ୍ରଗାମୀ ଥିଲେ । ମହାଭାରତଠାରୁ ବୌଦ୍ଧଜାତକ ପର୍ଯ୍ୟନ୍ତ ପ୍ରାଚୀନ ଗ୍ରନ୍ଥମାନଙ୍କରେ କଳିଙ୍ଗବାସିମାନଙ୍କର ଶକ୍ତି, ସାହସ, ପରାକ୍ରମ, ବିଭବ ଓ ସମୃଦ୍ଧି ସମ୍ବନ୍ଧରେ ଯେଉଁ କଥା ବର୍ଣ୍ଣିତ ହୋଇଅଛି ସେଥିରୁ ଅନୁମିତ ହୁଏ ଅତି ପ୍ରାଚୀନକାଳରେ ମଧ୍ୟ କଳିଙ୍ଗ ଗୋଟିଏ ବଳଶାଳୀ, ଉନ୍ନତ ଓ ସ୍ୱାଧୀନ ରାଜ୍ୟ ଥିଲା । କଳିଙ୍ଗର ଏହି ଅସୀମ ସମ୍ପଦର କାରଣ ଥିଲା ତାହାର ଅନ୍ତର୍ବାଣିଜ୍ୟ । କଳିଙ୍ଗର ଜଙ୍ଗଲମାନଙ୍କରେ ଅସଂଖ୍ୟ ହାତୀ ଥିବାରୁ ଏ ଦେଶର ବଣିକମାନେ ବୈଦେଶିକ ରାଜ୍ୟମାନଙ୍କ ସହିତ ସମୁଦ୍ର ପଥରେ ହାତୀଦାନ୍ତର ବାଣିଜ୍ୟ ବ୍ୟବସାୟ କରୁଥିବା ଅସମ୍ଭବ ନୁହେଁ । ବାଣିଜ୍ୟ ପ୍ରତ୍ୟେକ ଜାତିର ଜାତୀୟ ଉନ୍ନତିର ମାନଦଣ୍ଡ । ଯେଉଁ ଜାତି ବାଣିଜ୍ୟରେ ଯେତେ ପଟୁ, ସେହି ଜାତି ସେତେ ବଳଶାଳୀ ଓ ସମୁନ୍ନତ । କଳିଙ୍ଗର ବିଭବ ଓ ସମ୍ପଦରେ ଆକୃଷ୍ଟ ହୋଇ ନନ୍ଦବଂଶର ପ୍ରଥମ ରାଜା ମହାପଦ୍ମନନ୍ଦ ବା ନନ୍ଦବର୍ଦ୍ଧନ କଳିଙ୍ଗ ଜୟ କରି ଏହାକୁ ନନ୍ଦ ସାମ୍ରାଜ୍ୟର ଅନ୍ତର୍ଭୁକ୍ତ

---

* 'The whole of Orissa is holy land' p. 144 Encyclopaedia Britannica.

ଥିଲେ । ଏହା ଖ୍ରୀଷ୍ଟପୂର୍ବ ୪୬୦ ଅବ୍ଦର ଐତିହାସିକ ଘଟଣା । ସୁତରାଂ ଏ ଅବ୍ଦର ଅନେକ ବର୍ଷ ପୂର୍ବରୁ ଉତ୍କଳ ଯେ ସମୃଦ୍ଧିଶାଳୀ ରାଜ୍ୟ ହୋଇଥିଲା ଏଥିରେ ସନ୍ଦେହ କରିବାର କୌଣସି କାରଣ ନାହିଁ । ସୁତରାଂ ନନ୍ଦବଂଶର ନନ୍ଦବର୍ଦ୍ଧନଙ୍କ ଦ୍ୱାରା ଅଧିକୃତ ହେବା ପୂର୍ବରୁ କଳିଙ୍ଗ ଯେ ବାଣିଜ୍ୟ ବ୍ୟବସାୟ ଜନିତ ହେତୁ ସମ୍ପଦର ଅଧିକାରୀ ହୋଇଥିଲା ଏହା ସୁନିଶ୍ଚିତ * । ଡାକ୍ତର ସ୍ପୁନରଙ୍କଦ୍ୱାରା ଆବିଷ୍କୃତ ଖଣ୍ଡିଏ ତାଳପତ୍ର ପୋଥିରୁ ଜଣାଯାଏ, ନନ୍ଦବଂଶର ଶେଷ ରାଜାଙ୍କୁ ଦୁର୍ବଳ ଦେଖି କଳିଙ୍ଗର ରାଜା ବୀର ପୁନର୍ବାର ଏ ଦେଶକୁ ଦାସତ୍ୱପାଶରୁ ମୁକ୍ତ କଲେ † । କଳିଙ୍ଗର ବିଶାଳ ବପୁ ଓ ବିଭବ ବୈଭବ ଦେଖି ଅଶୋକ ପୁନର୍ବାର କଳିଙ୍ଗ ଜୟ କରିଥିଲେ । ଅଶୋକଙ୍କଦ୍ୱାରା ବିଜିତ ହେବାର ବହୁକାଳ ପୂର୍ବରୁ କଳିଙ୍ଗ ଅତ୍ୟନ୍ତ ସମୃଦ୍ଧିଶାଳୀ ରାଜ୍ୟ ଥିଲା । ଏହି ସମ୍ପଦ ଓ ବିଭବର ମୂଳକାରଣ କେବଳ କଳିଙ୍ଗବାସୀମାନଙ୍କର ସମୁଦ୍ରବାଣିଜ୍ୟ ।

ଅଶୋକଙ୍କଦ୍ୱାରା ମୌର୍ଯ୍ୟ-ସାମ୍ରାଜ୍ୟର ଅନ୍ତର୍ଭୁକ୍ତ ହେବା ପୂର୍ବରୁ କଳିଙ୍ଗ ବିଭବ, ପରାକ୍ରମ, ଶକ୍ତି ଓ ତେଜରେ ସମସ୍ତ ଭାରତ-ଭୂମିରେ ଏକ ଗୌରବଶାଳୀ ରାଜ୍ୟ ହୋଇଥିଲା । ମୌର୍ଯ୍ୟ ସମ୍ରାଟ୍ ଅଶୋକଙ୍କୁ ମଧ୍ୟ କଳିଙ୍ଗ ଜୟ କରିବାରେ କମ୍ କଷ୍ଟ ଭୋଗ କରିବାକୁ ହୋଇନାହିଁ । ତାଙ୍କ ପିତାମହ ପ୍ରବଳପ୍ରତାପୀ ଚନ୍ଦ୍ରଗୁପ୍ତ କେବଳ କଳିଙ୍ଗ ଛଡ଼ା ସମଗ୍ର ଆର୍ଯ୍ୟାବର୍ତ୍ତ ଜୟ କରିଥିଲେ । ଏପରି କି ତାଙ୍କର ସୁବିଶାଳ ସାମ୍ରାଜ୍ୟ ପଶ୍ଚିମରେ ଆଫଗାନିସ୍ଥାନ ପର୍ଯ୍ୟନ୍ତ ବିସ୍ତୃତ ଥିଲା । ଏପରି ପ୍ରବଳପରାକ୍ରମଶାଳୀ ଅଦ୍ୱିତୀୟ ବୀର

---

* ବିଶ୍ୱନାଥ କର—ପ୍ରାଚୀନ ଉତ୍କଳରେ ଜଳଯାତ୍ରା ପୃ ୧୯

† "The Prachi—Vol I—Part II, p. 2

ଚନ୍ଦ୍ରଗୁପ୍ତ ଯେ ବାର୍ହିକ କଳିଙ୍ଗ ବିରୁଦ୍ଧରେ ଅଭିଯାନ ସୁଦ୍ଧା କରି ନ ଥିଲେ ତାହାର ରହସ୍ୟ କିଛି ବୁଝି ହୁଏ ନାହିଁ । ଅଶୋକ ନିଜେ ତାଙ୍କ ଅନୁଶାସନରେ କହିଅଛନ୍ତି, କଳିଙ୍ଗ-ଯୁଦ୍ଧରେ ଏକ ଲକ୍ଷ କଳିଙ୍ଗ-ସେନା ନିହତ ହୋଇଥିଲେ; ଏକ ଲକ୍ଷ ପଚାଶ ହଜାର ସୈନ୍ୟ ବନ୍ଦୀ ହେଲେ ଏବଂ ଏହାର ବହୁଗୁଣ ଲୋକ ମରିଥିଲେ । * ଅଶୋକ ତାଙ୍କ ଜୀବନରେ ଏପରି ଭୟାବହ ଲୋମହର୍ଷଣକାରୀ ବିରାଟ ସଂଗ୍ରାମ, ଦେଶ ଓ ଜାତିର ସ୍ୱାଧୀନତା ରକ୍ଷା କରିବା ନିମନ୍ତେ ଏତେ ଉତ୍ସାହ, ଉଦ୍ୟମ ଓ ବ୍ୟାକୁଳତା, ଏତେ ପରାକ୍ରମ ଓ ଶକ୍ତି ଆଉ କୌଣସି ଯୁଦ୍ଧ-କ୍ଷେତ୍ରରେ ଦେଖି ନ ଥିଲେ । ସୁତରାଂ ରକ୍ତପ୍ଳାବିତ ଏହି ପୂତିଗନ୍ଧମୟ ରଣ-ଭୂମିରେ ସହସ୍ର ସହସ୍ର ଲୋକଙ୍କର ମୃତଦେହ ଦେଖି, ଶତ ଶତ ବିଧବାଙ୍କର ବିଳାପଧ୍ୱନି ଶୁଣି ଅଶୋକଙ୍କ ହୃଦୟରେ ଅଦ୍ଭୁତ ପରିବର୍ତ୍ତନର ସୂତ୍ରପାତ ହେଲା । ଏହି ପରିବର୍ତ୍ତନର ଫଳରେ ସମସ୍ତ ପୃଥିବୀରେ ବ୍ୟାପିଗଲା ଅହିଂସା-ନୀତିମୂଳକ ଶାନ୍ତିମନ୍ତ୍ରପୂତ ବୌଦ୍ଧଧର୍ମ । ଯେ ଯାହା ହେଉ, କଳିଙ୍ଗର ଏ ଯେ ବିଶାଳ ସେନା—ମାତୃଭୂମିର ସ୍ୱାଧୀନତା ନିମନ୍ତେ ଅକାତର ଭାବରେ ନିଜର ଶେଷ ଶୋଣିତ ବିନ୍ଦୁ ପର୍ଯ୍ୟନ୍ତ ଯୁଦ୍ଧ-କ୍ଷେତ୍ରରେ ଢାଳି ଦେଲେ, ସେହି ବିରାଟ ସେନାର ଶାସନ ଓ ରକ୍ଷଣାବେକ୍ଷଣ ନିମନ୍ତେ କଳିଙ୍ଗ ଏତେ ପ୍ରଚୁର ଅର୍ଥ ଆଣିଲା କେଉଁଠାରୁ ? କାହା ବଳରେ କଳିଙ୍ଗବାସୀ ଏତେ ତେଜସ୍ୱୀ, ଦୁର୍ଦ୍ଦାନ୍ତ ଓ ପରାକ୍ରମଶାଳୀ ହୋଇ ଉଠିଥିଲେ ? ନନ୍ଦବଂଶୀୟ ରାଜାଙ୍କଠାରୁ ମୌର୍ଯ୍ୟବଂଶୀୟ ନୃପତିମାନଙ୍କ ପର୍ଯ୍ୟନ୍ତ ସମସ୍ତେ ବାର୍ହିକ କଳିଙ୍ଗ ବିରୁଦ୍ଧରେ ଯୁଦ୍ଧ-ଅଭିଯାନ କରୁଥିଲେ ? ଏ ସମସ୍ତ ପ୍ରଶ୍ନର ଉତ୍ତର ଆମ୍ଭମାନଙ୍କୁ କିଏ

* Oxford History of India—Smith p. 95

ଦେବ ? ସୁତରାଂ ଆମ୍ଭମାନଙ୍କୁ ବାଧ୍ୟ ହୋଇ ଅନୁମାନ କରିବାକୁ ହେବ, ଅଶୋକଙ୍କର ବହୁକାଳ ପୂର୍ବରୁ କଳିଙ୍ଗବାସୀମାନେ ଜଳ ଓ ସ୍ଥଳ-ବାଣିଜ୍ୟରେ ପଟୁ ଓ ନିପୁଣ ଥିଲେ । ବିଦେଶରୁ ଧନ ସମ୍ପଦ ନ ଆଣି କୌଣସି ଜାତି, କି ଆଧୁନିକ କି ପ୍ରାଚୀନ, ଏତେ ସମ୍ପଦ-ଶାଳୀ ଓ ପରାକ୍ରାନ୍ତ ହୋଇ ନ ପାରେ ।

ବୁଦ୍ଧଦେବଙ୍କ ଆବିର୍ଭାବ ପୂର୍ବରୁ ଯେ ଏ ଦେଶରେ ନୌବାଣିଜ୍ୟ ପ୍ରସିଦ୍ଧି ଲାଭ କରିଥିଲା ଏହା ମଧ୍ୟ କେତେକ ଗଳ୍ପ ଓ କିମ୍ବଦନ୍ତୀରୁ ପରିଷ୍କାର ଜଣାଯାଏ । ବ୍ରହ୍ମଦେଶରେ ଦୁଇଟି ବଣିକ-ଭ୍ରାତା ତପୁସ ଓ ପାଲ୍ଲିକ ବୁଦ୍ଧଦେବଙ୍କୁ ଉପହାର ଦେବା ନିମନ୍ତେ ବୋଇତରେ ପ୍ରାୟ ପାଞ୍ଚଶ ଗାଡ଼ି ଜିନିଷ ବୋଝେଇ କରି କଳିଙ୍ଗର ଉତ୍ତର-ପୂର୍ବ ଉପକୂଳରେ ଥିବା ଅଡ଼ିକଟା ନାମକ ବନ୍ଦରରେ ଜାହାଜରୁ ଅବତରଣ କଲେ । ଏହି ଅଡ଼ିକଟା ବନ୍ଦରରୁ ସେମାନେ ସ୍ଥଳପଥରେ ମଗଧ ଯାତ୍ରା କଲେ ।* ଅବଶ୍ୟ ଏହି ଅଡ଼ିକଟା ବନ୍ଦର କେଉଁଠାରେ ତାହା ଏ ପର୍ଯ୍ୟନ୍ତ ଠିକ୍ ଜଣା ଯାଇ ନାହିଁ । ଖ୍ରୀଷ୍ଟ ପ୍ରଥମ ଶତାବ୍ଦୀରେ ଲିଖିତ ଟଲେମିଙ୍କ 'ପ୍ରାଚୀନ ଭାରତର ଭୂଗୋଳ'ରେ ମଧ୍ୟ ଏ ବନ୍ଦର ଉଲ୍ଲେଖ ନାହିଁ † । ସେ ଯାହା ହେଉ, ପାଞ୍ଚଶହ ଗାଡ଼ିର ଜିନିଷ ଯେଉଁ ବନ୍ଦରରେ ଖଲାସ କରି ଯାଇ ପାରୁଥିଲା, ସେ ବନ୍ଦର ଯେ କେଡ଼େ ବିଶାଳ ଥିବ ଓ କେତେବର୍ଷ ଆଗରୁ ପ୍ରସିଦ୍ଧି ଲାଭ କରି ଆସିଥିବ ଏହା ସହଜରେ ଅନୁମେୟ । ଅତ ଅନ୍ୟ କଥା ଛାଡ଼ି ଦେଲେ, ଏହି ଅଡ଼ିକଟା ବନ୍ଦରର ଅସ୍ତିତ୍ୱ ପ୍ରମାଣ କରେ ଯେ ବୁଦ୍ଧଦେବଙ୍କ ଆବିର୍ଭାବର

---

* R. Mookherjee—'Indian shipping' p. 71

† The Prachi—Vol I, part II, p. 6

ବହୁକାଳ ପୂର୍ବରୁ କଳିଙ୍ଗବାସୀମାନେ ସମୁଦ୍ରପଥରେ ଯାତାୟାତ କରିବାରେ ପ୍ରସିଦ୍ଧ ଥିଲେ । ସୁତରାଂ ଯେଉଁମାନେ କହନ୍ତି "ପ୍ରମାଣ ମିଳୁଛି ଖ୍ରୀଷ୍ଟପୂର୍ବ ୮୦୦ ବର୍ଷ ପୂର୍ବରୁ କଳିଙ୍ଗବାସୀ ସମୁଦ୍ର-ବାଣିଜ୍ୟରେ ନିପୁଣ ହୋଇଥିଲେ" ସେମାନଙ୍କର ମତ ଭ୍ରାନ୍ତ କିମ୍ବା ଅମୂଳକ ନୁହେଁ * ।

କଳିଙ୍ଗର ପରାକ୍ରମଶାଳୀ ଅଧିବାସୀମାନେ ମୌର୍ଯ୍ୟସମ୍ରାଟ୍ ଅଶୋକଙ୍କ କଳିଙ୍ଗ-ଅଭିଯାନର ବହୁକାଳ ପୂର୍ବରୁ ବ୍ରହ୍ମଦେଶରେ ଉପନିବେଶ ସ୍ଥାପନ କରିଥିଲେ † । ଅସୀମ ଅନନ୍ତ ମହୋଦଧିର ବିଶାଳ, ଉନ୍ମୁକ୍ତ ଓ ଉଦ୍ଦାମବକ୍ଷରେ ସୁଦୂର ବ୍ରହ୍ମଦେଶ ପର୍ଯ୍ୟନ୍ତ ଯାଇ ସେଠାରେ ଉପନିବେଶ ସ୍ଥାପନ କରିବା ନିମନ୍ତେ କଳିଙ୍ଗବାସୀଙ୍କର ଯେଉଁ ସାହସ, ଶକ୍ତି, ଧୈର୍ଯ୍ୟ ଓ ପରାକ୍ରମ ଲୋଡ଼ା ହୋଇଥିବ ତାହା ସେମାନେ ଦଶ ପନ୍ଦର ବର୍ଷରେ ଅର୍ଜନ କରିପାରି ନ ଥିବେ । ଏପରି ସାହସ ଓ ପରାକ୍ରମ ଅର୍ଜନ କରିବାକୁ ସେମାନଙ୍କୁ ନିଶ୍ଚୟ ବହୁ ଶତାବ୍ଦୀ ଲାଗିଥିବ । ପୁଣି ଅଶୋକଙ୍କର କଳିଙ୍ଗ-ବିଜୟର ବହୁକାଳ ପୂର୍ବରୁ ବ୍ରହ୍ମଦେଶରେ କଳିଙ୍ଗ-ଉପନିବେଶ ସ୍ଥାପିତ ହୋଇଥିଲା । ସୁତରାଂ ଖ୍ରୀଷ୍ଟଜନ୍ମର ୮୦୦ ବର୍ଷ ପୂର୍ବେ କଳିଙ୍ଗର ଲୋକେ ଜାହାଜ-ନିର୍ମାଣ ଓ ନୌ-ବାଣିଜ୍ୟରେ ପାରଦ

---

* କୃପାସିନ୍ଧୁ ମିଶ୍ର—ଉତ୍କଳ ଇତିହାସ p. 48

† "The mighty people of Kalinga had established an Empire in Burma long before, the Emperor Asok led his victorious soldiers into Kalinga"—The journal of Bihar and Orissa Research Society—Vol VI-part III, p,251.

ଓ ପ୍ରସିଦ୍ଧି ଲାଭ କରିଥିଲେ ବୋଲି ଯେଉଁମାନେ କହନ୍ତି ସେମାନେ ସତ୍ୟର ଅପଲାପ କରି ନାହାନ୍ତି ।

ପୂର୍ବରୁ କୁହାଯାଇଅଛି ହାତୀ ଓ ହାତୀଦାନ୍ତରେ ବାଣିଜ୍ୟ ବ୍ୟବସାୟ କରିବାରେ କଳିଙ୍ଗ ମହାଭାରତକାଳରୁ ସୁଖ୍ୟାତି ଲାଭ କରିଥିଲା । ଓଡ଼ିଶାର ଜଙ୍ଗଲଗୁଡ଼ିକ ହାତୀ ନିମନ୍ତେ ଚିରପ୍ରସିଦ୍ଧ । ସୁତରାଂ ଓଡ଼ିଶାର ପ୍ରାଚୀନ ଦେବମନ୍ଦିରମାନଙ୍କରେ ହାତୀ ପ୍ରଚୁର ପରିମାଣରେ ଖୋଦିତ ହୋଇଥିବାର ଦେଖାଯାଏ * । କାଶ୍ମୀର ଓ ଭାରତର ଅନ୍ୟାନ୍ୟ ସୀମାନ୍ତ ପ୍ରଦେଶମାନଙ୍କରେ ହାତୀ ଧରିବା ଓ ହାତୀ ପୋଷିବା ବିଷୟରେ କଳିଙ୍ଗର ସୁଖ୍ୟାତି ପ୍ରଚଳିତ ଥିଲା । ସୁତରାଂ ଦେଶର ସମ୍ପଦ ଓ ଶ୍ରୀ ବୃଦ୍ଧି କରିବାରେ କଳିଙ୍ଗବାସୀମାନେ ଯେ ଅତି ପ୍ରାଚୀନ କାଳରୁ ହାତୀର ବାଣିଜ୍ୟରେ ବ୍ୟାପୃତ ଥିବେ ଏହା ଅନୁମାନ କରିବା ସ୍ୱତଃସିଦ୍ଧ । ଖ୍ରୀଷ୍ଟପୂର୍ବ ୪ର୍ଥ ଶତାବ୍ଦୀରେ ମେଘାସ୍ଥିନିସ୍‌ଙ୍କ ଭାରତବିବରଣରୁ ଜଣାଯାଏ ସେତେବେଳେ ଏବଂ ତା ପୂର୍ବରୁ ଲଙ୍କା ଦ୍ୱୀପ ଓ କଳିଙ୍ଗ ମଧ୍ୟରେ ହାତୀର ବାଣିଜ୍ୟ ସମୁଦ୍ରପଥରେ ଚାଲିଥିଲା । କଳିଙ୍ଗଗଣ ନିଜ ଜାହାଜରେ ଲଙ୍କାରୁ ବଡ଼ ବଡ଼ ହାତୀ ଆପଣା ଦେଶକୁ ଆଣୁଥିଲେ । ହାତୀକୁ ସମୁଦ୍ରପଥରେ ବୋହିନେବା ନିମନ୍ତେ 'ହାତୀ-ବୋଇତ' ନାମରେ ବଡ଼ ବଡ଼ ବୋଇତମାନ ତିଆରି ହେଉଥିଲା । ହାତୀଗୁମ୍ଫା ଅନୁଶାସନରୁ ଜଣାଯାଏ ସମ୍ରାଟ୍ ଖାରବେଳ ପାଣ୍ଡ୍ୟ ରାଜାଙ୍କ-

---

* "Orissa had been noted from time immemorial for elephants, and hence we find them abundantly sculptured"—M. M. Ganguli—'Orissa and her remains" p. 74

ଠାରୁ ଅଦ୍ଭୁତ ହାତୀ-ଜାହାଜ ଉପହାର ପାଇଥିଲେ * । ଏଥିରୁ ସ୍ପଷ୍ଟ ଅନୁମିତ ହୁଏ, ଖ୍ରୀଷ୍ଟପୂର୍ବ ଦୁଇ ଶତ ବର୍ଷ ପୂର୍ବରୁ ଲଙ୍କା ଓ ପାଣ୍ଡ୍ୟ ରାଜ୍ୟମାନଙ୍କ ସହିତ କଳିଙ୍ଗବାସୀମାନେ ସୁବୃହତ୍ ହାତୀ-ବୋଇତ-ମାନଙ୍କରେ ବାଣିଜ୍ୟ କରୁଥିଲେ । ଏପରି ବିଶାଳ ବୋଇତ ନିର୍ମାଣ କରି ସମୁଦ୍ରପଥରେ ନିର୍ଭୀକ ଭାବରେ ଯାତାୟାତ କରିବାକୁ କଳିଙ୍ଗ ଲୋକମାନଙ୍କୁ ନିଶ୍ଚୟ ବହୁ ଶତାବ୍ଦୀ ଲାଗିଥିବ । ଏହା ବର୍ଷେ ଦୁଇ ବର୍ଷର ଶିକ୍ଷା କମ୍ବା ସାଧନାର ଫଳ ହୋଇ ନ ପାରେ । ସୁତରାଂ ଖ୍ରୀଷ୍ଟପୂର୍ବ ସପ୍ତମ କମ୍ବା ଅଷ୍ଟମ ଶତାବ୍ଦୀ ପୂର୍ବରୁ କଳିଙ୍ଗର ସମୁଦ୍ର-ବାଣିଜ୍ୟ ଆରମ୍ଭ ହୋଇଥିଲା ।

ଖ୍ରୀଷ୍ଟପୂର୍ବ ତୃତୀୟ ଓ ଚତୁର୍ଥ ଶତାବ୍ଦୀମାନଙ୍କର ଅନୁଶାସନ-ମାନଙ୍କରେ ଲେଖାଅଛି ଯେ ସମୁଦ୍ରଯାତ୍ରା ଓ ସମୁଦ୍ରବାଣିଜ୍ୟ ସେତେବେଳେ କଳିଙ୍ଗ ରାଜକୁମାରମାନଙ୍କର ଶିକ୍ଷାବିଧାନର ଅନ୍ତର୍ଗତ ହୋଇଥିଲା † । 'ଭାରତୀୟ ନୌବାଣିଜ୍ୟ' ନାମକ ସୁପ୍ରସିଦ୍ଧ ଇଂରେଜୀ ପୁସ୍ତକର ଶକ୍ତିଶାଳୀ ଲେଖକ ଶ୍ରୀ ରାଧାକୁମୁଦ ମୁଖାର୍ଜି ମଧ୍ୟ ଏ ବିଷୟରେ ଏକମତ ‡ । ସମୁଦ୍ର ଯାତ୍ରା ଓ ସମୁଦ୍ର-

* 'The same year is further marked by extra-ordinary capture or present of elephant-ships which were brought to Kalinga apparently from the King of the Pandays'.

The Bihar and Orissa Research Society Journal, Vol, III, part IV p, 433

† ୰ କୃପାସିନ୍ଧୁ ମିଶ୍ର—ଉତ୍କଳ-ଇତିହାସ ପୃ ୪୧

‡ 'Some of the inscriptions speak of navigation and ship-commerce as forming part of the education of the Princes of Kalinga'—R. Mookherjee, 'History of Indian shipping' p. 144

ବାଣିଜ୍ୟ କଳିଙ୍ଗ ରାଜକୁମାରମାନଙ୍କର ଶିକ୍ଷା-ବିଧାନର ଅନ୍ତର୍ଗତ ହେବା ପୂର୍ବରୁ ଏହା ନିଶ୍ଚୟ ଲୋକସାଧାରଣ ଓ ବଣିକ୍‌ଶ୍ରେଣୀମାନଙ୍କର ପାଠ୍ୟ ହୋଇଥିବ । କାରଣ ସମୁଦ୍ର-ବାଣିଜ୍ୟ ସେ ଯୁଗରେ ଏପରି ପ୍ରାଧାନ୍ୟ ଲାଭ କରିଥିଲା ଯେ ରାଜକୁମାରମାନେ ସେ ବିଷୟରେ ଶିକ୍ଷା ପାଇବାକୁ ବାଧ୍ୟ ହେଉଥିଲେ । ସୁତରାଂ ଖ୍ରୀଷ୍ଟପୂର୍ବ ୩ୟ ଓ ୪ର୍ଥ ଶତାବ୍ଦୀର ବହୁପୂର୍ବରୁ କଳିଙ୍ଗର ଲୋକମାନେ ସମୁଦ୍ର-ବାଣିଜ୍ୟ ସମୁଦ୍ର-ଯାତ୍ରା ସହିତ ଘନିଷ୍ଠ ଭାବରେ ସଂପୃକ୍ତ ହୋଇଥିଲେ, ଏପରି ଅନୁମାନ କରିବା ଅପ୍ରାସଙ୍ଗିକ ନୁହେଁ । ଓଡ଼ିଶାର ପ୍ରସିଦ୍ଧ ଇତିହାସ-ଲେଖକ ହଣ୍ଟର ସାହେବ କହନ୍ତି, ଏହି ପ୍ରାଚୀନ ଯୁଗରେ ମଧ୍ୟ କଳିଙ୍ଗ ବାଣିଜ୍ୟର ପ୍ରଧାନ କେନ୍ଦ୍ରସ୍ଥଳୀ ଥିଲା । ସୂକ୍ଷ୍ମବସ୍ତ୍ର ବୟନ କରିବାରେ କଳିଙ୍ଗର ଖ୍ୟାତି ସେତେବେଳେ ସାରା ଭାରତରେ ବ୍ୟାପି ଯାଇଥିଲା । କଳିଙ୍ଗର ରାଜା ଥରେ ଅଯୋଧ୍ୟାର ରାଜାଙ୍କୁ ଏହି ସୂକ୍ଷ୍ମବସ୍ତ୍ରରୁ ଖଣ୍ଡିଏ ଉପହାର ଦେଇଥିଲେ । ଜଣେ ପୁରୋହିତା ନାରୀ ତାକୁ ପରିଧାନ କରିଥିବାରୁ ଲୋକମାନେ ତାକୁ ଉଲଗ୍ନ ମନେ କରି ଘୃଣା କଲେ * । ଏହି ସୂକ୍ଷ୍ମ ବସ୍ତ୍ର ଯେ ଜାହାଜରେ ଦୂର ବିଦେଶକୁ ଯାଉ ନ ଥିବ ଏ କଥା କୁହା ଯାଇ ନ ପାରେ । ସୁତରାଂ ଖ୍ରୀଷ୍ଟପୂର୍ବ ସପ୍ତମ କିମ୍ବା ଅଷ୍ଟମ ଶତାବ୍ଦୀ ପୂର୍ବରୁ କଳିଙ୍ଗରେ ନିଶ୍ଚୟ ସମୁଦ୍ର-ବାଣିଜ୍ୟ ଆରମ୍ଭ ହୋଇଥିବ ।

---

* "So fine was the linen which the prince of Kalinga sent to the King of Oudh, that a priestess who put on the gauzy fabric was accused of appearing naked"—Journal As. soc. of Bengal, VI.

ପୂର୍ବ କୃଦ୍ଧାପାରଠାରୁ ବାଣିଜ୍ୟ-ଦ୍ରବ୍ୟର ବହୁଳ ପ୍ରଚୁର ଓ ପ୍ରସାର ଉଦ୍ଦେଶ୍ୟରେ କଳିଙ୍ଗର ଲୋକମାନେ ସାଗରର ପର-ପାରରେ ଉପନିବେଶ ସ୍ଥାପନ କରିଥିଲେ । ଅଶୋକଙ୍କ କଳିଙ୍ଗ ଅଭିଯାନର ବହୁକାଳ ପୂର୍ବରୁ କଳିଙ୍ଗର ଲୋକମାନେ ବ୍ରହ୍ମଦେଶରେ ଉପନିବେଶ ସ୍ଥାପନ କରିଥିବା କଥା ଇତିହାସ ପ୍ରସିଦ୍ଧ । ଏପରି କି ରାମାୟଣବର୍ଣ୍ଣିତ ସମୁଦ୍ରରାଜ ବଳୀ ସମୁଦ୍ରୋପକୂଳବର୍ତ୍ତୀ କଳିଙ୍ଗର ରାଜା ଛଡ଼ା ଅନ୍ୟ କେହି ନୁହନ୍ତି ବୋଲି କେତେକ ପଣ୍ଡିତଙ୍କର ଅଭିମତ * । ବହୁ ଶତାବ୍ଦୀ ଧରି ବଙ୍ଗୋପସାଗର କଳିଙ୍ଗ ଜାହାଜ-ମାନଙ୍କର ଲୀଳାକ୍ଷେତ୍ର ଥିଲା । ବ୍ରହ୍ମଦେଶର ଧର୍ମଶାସ୍ତ୍ରମାନଙ୍କରୁ ଜଣାଯାଏ ଯେ କଳିଙ୍ଗର ବୌଦ୍ଧମାନେ ପ୍ରଥମେ ଧର୍ମ-ପ୍ରଚାର କରିବା ଉଦ୍ଦେଶ୍ୟରେ ବ୍ରହ୍ମଦେଶକୁ ଆସି କାଳକ୍ରମେ ଏ ଦେଶରେ ଆଧିପତ୍ୟ ବିସ୍ତାର କଲେ । ବ୍ରହ୍ମଦେଶ ମଧ୍ୟରେ ପ୍ରୋମ ନିକଟବର୍ତ୍ତୀ 'ଥାରେ-କ୍ଷେତ୍ର' ପରବର୍ତ୍ତୀ ଉତ୍କଳୀୟ ହିନ୍ଦୁମାନଙ୍କର ପ୍ରଧାନ ବସତି ହେଲା । ମାର୍ତ୍ତବାନ୍ ଉପକୂଳରେ ଉତ୍କଳର ବଣିକମାନେ ଖ୍ରୀଷ୍ଟ ତୃତୀୟ ଶତାବ୍ଦୀରେ ଉପନିବେଶ ସ୍ଥାପନ କରିଥିଲେ । ସେହି ବସତିମାନଙ୍କ ମଧ୍ୟରେ 'ଥାଟନ' କିମ୍ବା 'ସ୍ୱଧର୍ମନଗର' ପ୍ରଧାନ ଥିଲା । ବ୍ରହ୍ମଦେଶର ପ୍ରାଚୀନ ମୁଦ୍ରା ଓ ମୋହରମାନଙ୍କରେ ହିନ୍ଦୁଧର୍ମର ଚିହ୍ନ ଓ ସଙ୍କେତ ଥିବାର ସୁପ୍ରସିଦ୍ଧ ଐତିହାସିକ ସାର୍ ଏ. ପି. ଫେର

---

* "The conjecture may be hazarded that the great Sea-king Bali of the Ramayan might have been no other than a monarch of the sea-coast kingdom of Kalinga"—Mukherjee—Indian shipping, p. 145

ପ୍ରମାଣ କରି ଦେଖାଇଅଛନ୍ତି * । ଏବେ ସୁଦ୍ଧା ପାଲ୍‌ନା ଓ ସିଙ୍ଗା-ପୁରରେ 'କ୍ଲିଙ୍ଗ' ବୋଲି ଗୋଟିଏ ଜାତି ବାସ କରନ୍ତି । ଏହି କ୍ଲିଙ୍ଗମାନେ ଯେ ପ୍ରାଚୀନ କଳିଙ୍ଗବାସୀମାନଙ୍କର ବଂଶଧର ଏଥିରେ ସନ୍ଦେହ କରିବାର କୌଣସି କାରଣ ନାହିଁ ।

ଖ୍ରୀଷ୍ଟ ୭୫ ଅବ୍ଦରେ ଦଳେ ସମୁଦ୍ର-ଯାତ୍ରୀ ବଣିକ ବଡ଼ ବଡ଼ ବୋଇତରେ କଳିଙ୍ଗରୁ ଯାତ୍ରା କଲେ । କେବଳ ବଙ୍ଗୋପ-ସାଗରରେ ସୀମାବଦ୍ଧ ନ ରହି ସେହି ନାବିକମାନେ ଅସୀମ ଅତଳସ୍ପର୍ଶ ଭାରତମହାସାଗରରେ ବୋଇତମାନ ଭସାଇ ଦେଲେ । ଅବ-ଶେଷରେ ଦୀର୍ଘ ସମୁଦ୍ର ପଥ ପାର ହୋଇ ବୋଇତସବୁ ଜାଭା ଦ୍ୱୀପରେ ଲାଗିଲା । ସେଠାରେ ଅନେକ ଦିନ ରହି କଳିଙ୍ଗର ଏହି ବଣିକମାନେ ଉପନିବେଶ ସ୍ଥାପନ କଲେ ଏବଂ କାଳକ୍ରମେ ସେଠାରେ ସହର ଓ ନଗର ନିର୍ମାଣ କଲେ । ଏହି ଉପନିବେଶର ବାଣିଜ୍ୟ ବ୍ୟବସାୟ ବହୁକାଳ ପର୍ଯ୍ୟନ୍ତ ଭାରତ ସହିତ ଚାଲିଥିଲା । ସୁପ୍ରସିଦ୍ଧ ଐତିହାସିକ ଏଲ୍‌ଫିନ୍‌ଷ୍ଟୋନ ସାହେବ ଜାଭାରେ ହିନ୍ଦୁ-ଉପନିବେଶ ସ୍ଥାପନର ଇତିହାସ ଲେଖିବାକୁ ଯାଇ କହନ୍ତି, କଳିଙ୍ଗରୁ ଦଳେ ହିନ୍ଦୁ ଜାଭାରେ ଉପନୀତ ହୋଇଲେ; ଏହି ସ୍ଥାନର ଆଦିମ ଅଧିବାସୀମାନଙ୍କୁ ସଭ୍ୟ କଲେ; ଏ ଦେଶକୁ ଜୟ କଲେ ଏବଂ ଏଠାରେ ଗୋଟିଏ ହିନ୍ଦୁରାଜ୍ୟ ସ୍ଥାପନ କଲେ । କଳିଙ୍ଗର

---

* "The intercourse between Kalinga and Burma also appears from Sir A. P. Phayre's statement of coins and medals with Hindu symbols found in Pegu. ( History of Burma p. 31 ) Mookherjee—Ship-building, p. 146

ଲୋକମାନେ ସେମାନଙ୍କର ଜାଭାବିଜୟକୁ ଶରଣୀୟ କରିବା ନିମନ୍ତେ ଜାଭାରେ ଗୋଟିଏ ଅବ୍ଦ ପ୍ରଚଳନ କଲେ । ସେହି ଅବ୍ଦ ଖ୍ରୀଷ୍ଟ ୭୫ ରୁ ଆରମ୍ଭ ହେଲା । ସେହି ଅବ୍ଦ ଏବେ ସୁଦ୍ଧା ଜାଭାରେ ଚଳୁଅଛି । ଜାଭାରେ ଏବେ ସୁଦ୍ଧା ବହୁ ସଂଖ୍ୟକ ହିନ୍ଦୁମନ୍ଦିରର ଧ୍ୱଂସାବଶେଷ ଅଛି । ସେ ସ୍ଥାନର ସାଧାରଣ କଥିତ ଭାଷା ମାଳୟ ହେଲେ ସୁଦ୍ଧା ଅନୁଶାସନ ଓ ଧର୍ମଶାସ୍ତ୍ର ପ୍ରଭୃତି ସଂସ୍କୃତ ଭାଷାରେ ଲିଖିତ । ଚୀନ ପରିବ୍ରାଜକ ଫାହିୟାନ୍ ଖ୍ରୀଷ୍ଟ ଚତୁର୍ଥ ଶତାବ୍ଦୀର ଶେଷାଂଶରେ ଜାଭା ଦ୍ୱୀପରେ କେବଳ ହିନ୍ଦୁଲୋକମାନଙ୍କୁ ଦେଖିଥିଲେ ଏବଂ ସେ ବ୍ରାହ୍ମଣ ନାବିକମାନଙ୍କଦ୍ୱାରା ଚାଳିତ ଜାହାଜରେ ବଙ୍ଗଳର ମୁଖ୍ୟ ବନ୍ଦର ତାମ୍ରଲିପ୍ତଠାରୁ ଲଙ୍କା, ଲଙ୍କାରୁ ଜାଭା ଏବଂ ଜାଭାରୁ ଚୀନ ଦେଶକୁ ଯାତ୍ରା କରିଥିଲେ । ସୁତରାଂ ଖ୍ରୀଷ୍ଟ ଚତୁର୍ଥ ଶତାବ୍ଦୀର ବହୁକାଳ ପୂର୍ବରୁ ଯେ ଜାଭାରେ ଉତ୍କଳୀୟମାନେ ଉପନିବେଶ ସ୍ଥାପନ କରିଥିଲେ ଏଥିରେ ମତଦ୍ୱୈଧ ହେବାର କୌଣସି କାରଣ ନାହିଁ । *

କେବଳ ଏତିକି ନୁହେଁ; ଜାଭା, ସୁମାତ୍ରା, ବାଲି ଓ ତନ୍ନିକଟବର୍ତ୍ତୀ ଦ୍ୱୀପମାନଙ୍କରେ କଳିଙ୍ଗ ଯେ ଉପନିବେଶ ସ୍ଥାପନ କରିଥିଲା ତାହା ଅନେକ ଅଗାଧବିଦ୍ୟ ଐତିହାସିକ ପଣ୍ଡିତ ମୁକ୍ତକଣ୍ଠରେ ସ୍ୱୀକାର କରନ୍ତି । ର‍୍ୟାଫେଲ୍ସ କହନ୍ତି ଜାଭାର ହିନ୍ଦୁ-ପ୍ରଭାବ ଓ ସଭ୍ୟତା କଳିଙ୍ଗରୁ ଆନୀତ । ପର୍ଯ୍ୟଟକ ଟାଭର୍ଣ୍ଣିୟର (୧୬୭୬) କହନ୍ତି କଳିଙ୍ଗର ପ୍ରଧାନ ବନ୍ଦର ମହଲିପତ୍ତନଠାରୁ ଜାହାଜମାନ ଯାତ୍ରା କରି ଆରାକାନ, ପେଗୁ, ଶ୍ୟାମ, ସୁମାତ୍ରା, କୋଚିନ, ଗୁଜରାଟ ଏବଂ ମାଡାଗାସ୍କାର ପ୍ରଭୃତି ସ୍ଥାନମାନଙ୍କରେ ବାଣିଜ୍ୟ-ବ୍ୟବସାୟ ଓ

* Radhakumud Mookherjee—History of Indian shipping. p. 149-150

କଳିଙ୍ଗ-ସଭ୍ୟତା ବିସ୍ତାର କରିଥିଲା । ଜାଭା ଦ୍ୱୀପରେ ପ୍ରଚଳିତ କଥା ଓ କିମ୍ବଦନ୍ତୀରୁ ମଧ୍ୟ କଳିଙ୍ଗ ଓ ଜାଭାର ସମ୍ବନ୍ଧ ବିଷୟରେ ଅନେକ କଥା ଜଣାଯାଏ । ଇମ୍ପେ, ଗେଜେଟିଅରର ଲେଖକ କହନ୍ତି, ଓଡ଼ିଶାର ବଣିକମାନେ ଜାଭା ଏବଂ କାମ୍ବୋଡିଆରେ ଉପନିବେଶ ସ୍ଥାପନ କରିଥିଲେ । କଳିଙ୍ଗୀୟ ବଣିକମାନେ ଆରବ୍ୟସାଗର ପାର ହୋଇ ଅଫ୍ରିକା ମହାଦେଶର ପୂର୍ବ ଉପକୂଳବର୍ତ୍ତୀ ରାଜ୍ୟମାନଙ୍କରେ ଓ ମାଡାଗାସ୍କାର ଦ୍ୱୀପରେ ମଧ୍ୟ ବାଣିଜ୍ୟ ଚଳାଉଥିଲେ * । ଏହି ସୁବିଶାଳ ବାଣିଜ୍ୟକୁ ନିରାପଦ କରିବା ଓ ଶତ୍ରୁମୁଖରୁ ରକ୍ଷା କରିବା ନିମନ୍ତେ କଳିଙ୍ଗରେ ଯେ ସେତେବେଳେ ବିରାଟ ନୌସେନା ଥିଲେ ଏହା ନିଃସନ୍ଦେହଭାବରେ କୁହାଯାଇ ପାରେ ।

ପ୍ରାଚୀନ କଳିଙ୍ଗୀୟ ଶିଳ୍ପୀମାନେ ମଧ୍ୟ ଜଳଯାନ ବୋଇତ ଓ ଜାହାଜମାନଙ୍କୁ ଶିଳ୍ପ ଓ ସ୍ଥାପତ୍ୟରେ ସୁନ୍ଦରଭାବରେ ଫୁଟାଇ ପାରି ଅଛନ୍ତି । ଉତ୍କଳରେ ସେତେବେଳେ ସମୁଦ୍ର-ଯାତ୍ରା ଓ ନୌ-ବାଣିଜ୍ୟ ପ୍ରସିଦ୍ଧି ଲାଭ କରି ନ ଥିଲେ ଶିଳ୍ପୀର ପ୍ରାଣକୁ ଏ କଥା କାହିଁକି ସ୍ପର୍ଶ କରିଥାନ୍ତା ? ଉତ୍କଳୀୟ ଶିଳ୍ପୀର ବଂଶଧରଗଣ, ସେ ଯେତେବେଳେ ଯେଉଁ ଜଡ଼ପଦାର୍ଥ କିମ୍ବା ପ୍ରାକୃତିକ ସୌନ୍ଦର୍ଯ୍ୟରେ ବିମୁଗ୍ଧ ହୋଇଅଛନ୍ତି ସେତେବେଳେ ସେ ତାକୁ ପ୍ରସ୍ତର-ଗାତ୍ରରେ ଫୁଟାଇବାକୁ ଯତ୍ନବାନ୍ ହୋଇଅଛନ୍ତି । ଭୁବନେଶ୍ୱରର ବିନ୍ଦୁସାଗର ନିକଟବର୍ତ୍ତୀ ବଇତାଳ ଦେଉଳ ଯେଉଁମାନେ ଦେଖିଅଛନ୍ତି ସେମାନେ ନିଶ୍ଚୟ ବିଶ୍ୱାସ କରିବେ ଯେ, ଏହି ମନ୍ଦିରର ଶିରୋଭାଗର ଆକୃତି ଠିକ୍ ଗୋଟିଏ ଓଲଟା ବୋଇତ କିମ୍ବା ଜାହାଜ ସଦୃଶ । ଭୁବନେଶ୍ୱରର ଏହି ବଇତାଳ ଦେଉଳ-ମନ୍ଦିର ଖୁବ ସମ୍ଭବତଃ ଖ୍ରୀଷ୍ଟ ପଞ୍ଚମ କିମ୍ବା

* R. Mookherjee, Indian shipping, p. 150

୪ କୃପାସିନ୍ଧୁ ମିଶ୍ର—ଉତ୍କଳ ଇତିହାସ ପୃ ୫୩-୫୪

ଷଷ୍ଠ ଶତାବ୍ଦୀରେ ନିର୍ମିତ ହୋଇଥିଲା *। 'ବୋଇତାଳ' ଯେ ମଧ୍ୟ ସଂସ୍କୃତ 'ବୋହିତ' ଶବ୍ଦରୁ ଉତ୍ପନ୍ନ। ସୁତରାଂ ଖ୍ରୀଷ୍ଟ ପଞ୍ଚମ କିମ୍ବା ଷଷ୍ଠ ଶତାବ୍ଦୀରେ ଉତ୍କଳରେ ସମୁଦ୍ର-ବାଣିଜ୍ୟର ପ୍ରଚଳନ ନ ଥିଲେ ଶିଳ୍ପୀ ଏପରି ଆକାରର ଦେବ-ମନ୍ଦିରଟିଏ ବାନ୍ଧିବା କଳ୍ପନା କରିଥାନ୍ତେ ? ପୁଣି ଜଗନ୍ନାଥଙ୍କ ମନ୍ଦିରରେ ମଧ୍ୟ ଗୋଟିଏ ସୁନ୍ଦର ବୋଇତର ଛବି ଦେଖାଯାଏ। ଏହି ଚିତ୍ରରୁ ସେକାଳର ଉତ୍କଳୀୟ ଶିଳ୍ପୀମାନଙ୍କର ବୋଇତ ନିର୍ମାଣ-କୁଶଳତା ସୁନ୍ଦର ଭାବରେ ବୁଝାଯାଏ । ଏହି ଜାହାଜ 'ମଧ୍ୟମନ୍ଦିର' ଶ୍ରେଣୀ ଅନ୍ତର୍ଗତ ବୋଲି ପଣ୍ଡିତ ରାଧାକୁମୁଦ ମୁଖାର୍ଜିଙ୍କର ମତ †।

ଖ୍ରୀଷ୍ଟ ପଞ୍ଚମ ଶତାବ୍ଦୀରେ ମଧ୍ୟ ଚୀନ୍ ଓ ଉତ୍କଳ ରାଜାମାନଙ୍କ ମଧ୍ୟରେ ବାଣିଜ୍ୟ ବ୍ୟବସାୟ ଓ ଉପଢୌକନାଦିର ଆଦାନପ୍ରଦାନ ହେଉଥିବାର ଯଥେଷ୍ଟ ପ୍ରମାଣ ମିଳେ । ଦନ୍ତବଂଶ, ଲଳିତବିସ୍ତର ଓ ମିଳିନ୍ଦ ପ୍ରଭୃତି ବୌଦ୍ଧଗ୍ରନ୍ଥ ଏହାର ପ୍ରମାଣ । ଖ୍ରୀଷ୍ଟ ୮୯୫ ଅବ୍ଦରେ ଶୁଭକର କେଶରୀ ନାମରେ ଜଣେ ରାଜା ଚୀନ ରାଜାଙ୍କ ନିକଟକୁ କେତେକ ଉପହାର ପଠାଇଥିଲେ ‡। ଶୁଭଙ୍କର ଜଣେ କର-ବଂଶୀୟ ରାଜା ଏବଂ ଏହି କରବଂଶୀୟ ରାଜାମାନେ ବୋଧହୁଏ

* "× × it may be surmised that the Vaital temple is probably dated in the 5th or the 6th century A. D." M. M. Ganguli—Orissa and her remains p. 389

† R. Mookherjee—Indian shipping, p. 37

‡ O' Malley—District Gazetteer, 'Balasore' p. 21.

କେଶରୀବଂଶର ଅଧୀନସ୍ଥ ସାମନ୍ତ ରଜା ଥିଲେ । କାହାରି କାହାରି ମତରେ ଏହି 'ପରମମାହେଶ୍ୱର' 'ମହାରାଜ' ଶୁଭକର କେଶରୀ ଚୀନର ରଜାଙ୍କୁ ଗୋଟିଏ 'ବୌଦ୍ଧସୂତ୍ର' ପୁସ୍ତକ ଉପହାର ଦେଇଥିଲେ । ସେ ଯାହା ହେଉ, ଏହି ଉପହାର ସବୁ କଳିଙ୍ଗର ସୁପ୍ରସିଦ୍ଧ ବନ୍ଦର ତାମ୍ରଲିପ୍ତଠାରୁ ଜାହାଜରେ ଯାଉଥିବ, କାରଣ ଅନେକ ସଂସ୍କୃତ ଗ୍ରନ୍ଥରୁ ଜଣାଯାଏ ତାମ୍ରଲିପ୍ତ ଏହି ସମୟରେ ଚୀନ-ବାଣିଜ୍ୟର ପ୍ରଧାନ କେନ୍ଦ୍ର ଥିଲା ।

ଏହି ଚୀନ-ଉତ୍କଳ ବାଣିଜ୍ୟ ବ୍ୟବସାୟ ଓ ଭାବର ଆଦାନ-ପ୍ରଦାନ ସମ୍ବନ୍ଧରେ ଫରାସୀ ପଣ୍ଡିତ ସିଲଭାନ୍ ଲେଭି ଚୀନଦେଶୀ ସାହିତ୍ୟରୁ ବହୁତ ଉପାଦେୟ ତଥ୍ୟ ଆବିଷ୍କାର କରିଅଛନ୍ତି * । ରୋମ ସହିତ ଭାରତବର୍ଷର ବାଣିଜ୍ୟ ସମ୍ବନ୍ଧରେ ଅନେକ ଅକାଟ୍ୟ ପ୍ରମାଣ ମିଳିଅଛି । ଜଣେ ରୋମଦେଶୀୟ ପ୍ରାଚୀନ ଗ୍ରନ୍ଥକାର ଦୁଃଖ ପ୍ରକାଶ କରି କହିଅଛନ୍ତି—"ରୋମାନ୍‌ମାନେ ଏତେଦୂର ବିଳାସୀ ହୋଇ ଉଠିଛନ୍ତି ଯେ କେବଳ ମିହି ସୂକ୍ଷ୍ମବସ୍ତ୍ର, ଗନ୍ଧଦ୍ରବ୍ୟ ପ୍ରଭୃତି ଅନାବଶ୍ୟକ ବିଳାସ-ଦ୍ରବ୍ୟ ନିମନ୍ତେ ପ୍ରତିବର୍ଷ ରୋମରୁ ଦଶକୋଟି ଟଙ୍କା ଭାରତବର୍ଷକୁ ଚାଲିଯାଉଅଛି † ।" ସୂକ୍ଷ୍ମବସ୍ତ୍ର ସକାଶେ କଳିଙ୍ଗ ଅତି ପ୍ରାଚୀନ କାଳରୁ ସୁଖ୍ୟାତି ଲାଭ କରିଆସିଛି । ତାମିଲ ଦେଶରେ ଏହି କଳିଙ୍ଗ ବସ୍ତ୍ରର ଏତେ ଆଦର ଥିଲା ଯେ ସେହି ଭାଷାରେ ବସ୍ତ୍ରକୁ ଏବେ 'କଳିଙ୍ଗ' ବୋଲି କହନ୍ତି । ସୁତରାଂ ଏହି ସୂକ୍ଷ୍ମବସ୍ତ୍ର ଯେ ରୋମକୁ କଳିଙ୍ଗରୁ ଯାଉଥିବ ଏପରି ଅନୁମାନ କରିବାର ଯଥେଷ୍ଟ ଯାଥାର୍ଥ୍ୟ ଅଛି । ବସ୍ତ୍ର ଛଡ଼ା ସମ୍ବଲପୁରର ହୀରା ମଧ୍ୟ କଳିଙ୍ଗ ନୌବାଣିଜ୍ୟର

* "ନବଭାରତ"—ମିଥୁନ, ୧୩୪୩, ପୃ ୮୦

† ନବଶକ୍ତି ( Bengalee )—Vol 1-part 20. p. 24.

ଅନ୍ୟତମ ପଦାର୍ଥ ଥିଲା । ସମ୍ବଲପୁରର ବାଡ଼ୁଆ ଜାତି ହୀରା ବ୍ୟବସାୟ କରିବାରେ ଚିର-ପ୍ରସିଦ୍ଧ । ସମ୍ବଲପୁରର ହୀରା କେବଳ ଭାରତ ବିଖ୍ୟାତ ନ ଥିଲା * । ସୁଦୂର ରୋମ-ସାମ୍ରାଜ୍ୟରେ ମଧ୍ୟ ଏହି ହୀରାର ବିଶେଷ ଆଦର ଥିଲା । ଖ୍ରୀଷ୍ଟପୂର୍ବ ପ୍ରଥମ ଓ ଦ୍ୱିତୀୟ ଶତାବ୍ଦୀରେ ସମ୍ବଲପୁର ହୀରା ଚଢ଼ାମୂଲ୍ୟରେ ରୋମନଗରରେ ବିକ୍ରି ହେଉଥିଲା । ସୁତରାଂ ଅତି ପ୍ରାଚୀନକାଳରୁ ବାଣିଜ୍ୟଲକ୍ଷ୍ମୀ କଳିଙ୍ଗର ପାଦତଳେ ଲୋଟୁଥିଲା । କେବଳ ଚୀନ୍ କିମ୍ବା ରୋମ ନୁହେଁ, ଖାରବେଳଙ୍କ ସମୟରେ ଏବଂ ତତ୍‌ପୂର୍ବରୁ ମଧ୍ୟ ପାରସ୍ୟ ଉପକୂଳରେ କଳିଙ୍ଗର ବାଣିଜ୍ୟ ଥିବାର ଜାଜ୍ୱଲ୍ୟ ପ୍ରମାଣ କରିଛନ୍ତି † ।

ଖ୍ରୀଷ୍ଟ ୬୩୦ ରୁ ୬୪୩ ଅବ୍ଦ ମଧ୍ୟରେ ଚୀନ୍‌ପରିବ୍ରାଜକ ହୁଏନ୍‌ସାଂ ଭାରତର ନାନାସ୍ଥାନରେ ଭ୍ରମଣ କରିଥିଲେ । ସେ ତାମ୍ରଲିପ୍ତ ବନ୍ଦର ବାଟେ ଓଡ଼ିଶାକୁ ଆସିଥିଲେ । ସେତେବେଳେ 'ଚେଲିତାଲୋ' ନାମରେ ଗୋଟିଏ ସହର ଓଡ଼ିଶାର ରାଜଧାନୀ ଥିବାର ସେ ଲେଖିଯାଇଅଛନ୍ତି । ହୁଏନ୍‌ସାଂ ନିମ୍ନଲିଖିତ ଭାବରେ ଏହାର ବର୍ଣ୍ଣନା କରିଅଛନ୍ତି ‡ :—

"ଉଡ୍ର ( ଓଡ଼ିଶା ) ଦେଶର ଦକ୍ଷିଣ-ପୂର୍ବ ସୀମାରେ ସମୁଦ୍ର-କୂଳରେ 'ଚେଲିତାଲୋ' ନାମକ ଗୋଟିଏ ରାଜଧାନୀ ଅଛି । ଏହାର ଚତୁଃପାର୍ଶ୍ୱର ପରିଧି ପ୍ରାୟ ୩୪ ମାଇଲ । ଏହି ସ୍ଥାନରୁ ବଣିକମାନେ ବିଭିନ୍ନ ଦେଶକୁ ବାଣିଜ୍ୟ ଉଦ୍ଦେଶ୍ୟରେ ଯାତ୍ରା କରନ୍ତି ଏବଂ ଯିବା ଆସିବା ପଥରେ ଏହି ସ୍ଥାନରେ ରହନ୍ତି । ଏହି

---

* ୰ କୃପାସିନ୍ଧୁ ମିଶ୍ର—ଉତ୍କଳ-ଇତିହାସ, ପୃ ୫୦
† ନବ ଭାରତ—ମିଥୁନ, ୧୩୪୩, ପୃ ୮୦
‡ ୰ କୃପାସିନ୍ଧୁ ମିଶ୍ର—'କୋଣାର୍କ' ପୃ ୫୧-୫୨

ନଗରର ପ୍ରାଚୀର ଶକ୍ତ ଓ ଉଚ୍ଚ । ଏହିଠାରେ ସକଳ ପ୍ରକାର ଦୁଷ୍ପ୍ରାପ୍ୟ ଓ ଦୁର୍ମୂଲ୍ୟ ପଦାର୍ଥ ମିଳେ । × × ×”

ଏହି 'ଚେଲିତାଲୋ'ର ଅବସ୍ଥିତି ନିର୍ଦ୍ଦେଶ କରିବାକୁ ଯାଇ ନାନା ମୁନି ନାନା ମତର ଅବତାରଣା କରିଅଛନ୍ତି । କିନ୍ତୁ 'ପ୍ରାଚୀ-ମାହାତ୍ମ୍ୟ'ରୁ ଜଣାପଡ଼େ, ଆଜିକାଲି କୋଣାର୍କର ଯେଉଁଠାରେ ପ୍ରତିବର୍ଷ ଶୁକ୍ଳ ମାଘସପ୍ତମୀ ଦିନ ଚନ୍ଦ୍ରଭାଗା ସ୍ନାନ କରାଯାଏ ସେଠାରେ 'ଚିତୋତ୍ପଳା' ନାମରେ ଗୋଟିଏ ନଦୀ ବହିଯାଉଥିଲା । ସେହି ଚିତୋତ୍ପଳା କୂଳରେ ଯେଉଁ ବୃହତ୍ ନଗର ଥିଲା ତାହାକୁ ମଧ୍ୟ ଚିତୋତ୍ପଳା ବୋଲି ଡାକୁଥିଲେ । ଚୀନ-ପରିବ୍ରାଜକ ହୁଏନ୍‌ସାଂ ଏହି ନଗରକୁ 'ଚେଲିତାଲୋ' ଆଖ୍ୟା ଦେଇଥିବାର ସମ୍ଭାବନା । ବର୍ତ୍ତମାନ ମଧ୍ୟ ଚନ୍ଦ୍ରଭାଗାର ଅନତିଦୂରରେ 'ଚିତ' ଓ 'ଉତ୍ପଳ' ନାମରେ ଦୁଇଗୋଟି ଗ୍ରାମ ଥିବାର ଶୁଣାଯାଏ । ଏହି ଚିତୋତ୍ପଳା ନଗର କାଳକ୍ରମେ କୋଣାର୍କରେ ପରିଣତ ହେଲା । ଶ୍ରୀଯୁକ୍ତ ମନମୋହନ ଗାଙ୍ଗୁଲି ମଧ୍ୟ କହନ୍ତି ଯେ 'ପ୍ରାଚୀ-ମାହାତ୍ମ୍ୟ' ପଢ଼ିଲେ ଜଣାଯାଏ ଯେ, ପ୍ରାଚୀ ନଦୀକୂଳରେ ସମୃଦ୍ଧିଶାଳୀ ନଗର ଓ ଗ୍ରାମମାନ ଥିଲା ଏବଂ ତନ୍ମଧ୍ୟରେ ସୁନ୍ଦର ମନ୍ଦିରମାନ ମଧ୍ୟ ଥିଲା * । ସୁତରାଂ ହୁଏନ୍‌ସାଂଙ୍କ ସମୟରେ 'ଚିତୋତ୍ପଳା' ଗୋଟିଏ ପ୍ରସିଦ୍ଧ ନଗର ଓ ବନ୍ଦର ଥିବାର ଅନୁମାନ କରାଯାଏ । ବହୁ ଦୂର ବିଦେଶରୁ ବାଣିଜ୍ୟ ପୋତମାନ ଆସି ଏହି ବନ୍ଦରରେ ଲାଗୁଥିଲେ ଏବଂ ଉତ୍କଳୀୟମାନେ ଏହି ବନ୍ଦରରୁ ସମୁଦ୍ରପଥରେ ଦୂରବିଦେଶରେ ବାଣିଜ୍ୟ କରିବାକୁ ଯାତ୍ରା କରୁଥିଲେ ।

---

* M. M. Ganguli—“Orissa and her remains” p, 437-438, Quoted in 'କୋଣାର୍କ' p. 66-67

ଏହି 'ଶବୋପୁରା' ନଗର ଯେ କାଳକ୍ରମେ କୋଣାର୍କରେ ପରିଣତ ହୋଇଥିବ—ଏପରି ଅନୁମାନ କରିବା ଅଯୌକ୍ତିକ ନୁହେଁ । କାରଣ କୋଣାର୍କ ଗୋଟିଏ ଖ୍ୟାତ ଓ ସମୃଦ୍ଧିଶାଳୀ ନଗର ହୋଇ ନ ଥିଲେ ସୂର୍ଯ୍ୟଙ୍କର ସର୍ବଶ୍ରେଷ୍ଠ ମନ୍ଦିର କଦାପି ସେଠିଏ ନିର୍ଜନ ପ୍ରାନ୍ତରରେ ନିର୍ମିତ ହୋଇ ନ ଥାନ୍ତା । ମାଦଳା ପାଞ୍ଜି ଅନୁସାରେ ବିଶ୍ୱାସ କରାଯାଏ ଯେ, କୋଣାର୍କର ସୂର୍ଯ୍ୟ ମନ୍ଦିର ରାଜା ଲାଙ୍ଗୁଳା ନରସିଂହଦେବଙ୍କ ଦ୍ୱାରା ଖ୍ରୀ: ୧୨୭୮ ଅବ୍ଦରେ ନିର୍ମିତ ହୋଇଥିଲା * । ସେତେବେଳକୁ କୋଣାର୍କ ନିଶ୍ଚୟ ଗୋଟିଏ ଖ୍ୟାତ ଓ ସମୃଦ୍ଧିଶାଳୀ ନଗର ଥିଲା । ଗୋଟିଏ ସ୍ଥାନକୁ ଏତେ ପ୍ରସିଦ୍ଧ, ଗୌରବ ଓ ସମୃଦ୍ଧି ଲାଭ କରିବାକୁ ଦଶେ ଦୁଇଦିନ ନୁହେଁ, ବହୁ ଶତାବ୍ଦୀ ଲାଗିଥିବା ସମ୍ଭାବନା । ଡାକ୍ତର ରାଜେନ୍ଦ୍ର ଲାଲ ମିତ୍ର କୋଣାର୍କ ନିକଟବର୍ତ୍ତୀ କେତେକ ସ୍ଥାନରେ ଇଟା ପ୍ରଭୃତି ଜମା ହୋଇଥିବାର ଦେଖି କହିଅଛନ୍ତି ଯେ, ଏହି ସ୍ଥାନରେ ଗୋଟିଏ ପ୍ରସିଦ୍ଧ ନଗର ଥିଲା । ତାହା ହୋଇ ନ ଥିଲେ ଓଡ଼ିଶାର ବୃହତ୍ତମ ଓ ସର୍ବଶ୍ରେଷ୍ଠ ମନ୍ଦିର ଏହିପରି ନିର୍ଜନ ବାଲୁକାମୟ ମରୁ ପ୍ରାନ୍ତରରେ କଦାପି ନିର୍ମିତ ହୋଇ ନ ଥାନ୍ତା† । ଏଥିରୁ ଜଣାଯାଏ ତ୍ରୟୋଦଶ ଶତାବ୍ଦୀର ବହୁକାଳ ପୂର୍ବରୁ କୋଣାର୍କରେ ଗୋଟିଏ ସମୃଦ୍ଧିଶାଳୀ ନଗର ଓ ବନ୍ଦର ଥିଲା, କାରଣ ବାଣିଜ୍ୟ-ବ୍ୟବସାୟ ଯେ କୌଣସି ସ୍ଥାନର ସମ୍ପଦ ଓ ସମୃଦ୍ଧିର ପ୍ରଧାନ ମାନଦଣ୍ଡ । କୋଣାର୍କ-ମନ୍ଦିର

---

* M. M. Ganguly—'Orissa and her remmains' p. 479

† R. Mittra—'Antiquities of Orissa' Vol 1 P. 142 Quoted in କୋଣାର୍କ p. 67

ନିର୍ମାଣ ସମୟକୁ ଏହି ନଗରର ଓ ବନ୍ଦରର ଗୌରବ ଓ ସମୃଦ୍ଧି ଅକ୍ଷୁଣ୍ଣ ଥିଲା, କାରଣ କୋଣାର୍କମନ୍ଦିର ନିର୍ମାଣରେ ଓଡ଼ିଆ-ଶିଳ୍ପୀମାନେ ଯେଉଁ ପର୍ବତରୂପୀ ବିଶାଳକାୟ ପ୍ରସ୍ତରଖଣ୍ଡମାନ ବ୍ୟବହାର କରୁଥିଲେ ତାହା କୋଣାର୍କ ନିକଟବର୍ତ୍ତୀ କୌଣସି ସ୍ଥାନରୁ ଆଣିବାର ସୁବିଧା ଓ ସୁଯୋଗ ନ ଥିଲା। ସେହି ସବୁ ପଥରଖଣ୍ଡମାନ କୌଣସି ଗଡ଼ଜାତ ଜଙ୍ଗଲମାନଙ୍କରୁ ନିଶ୍ଚୟ ଆସିଥିବ। କିନ୍ତୁ ଏତେଦୂରରୁ ବିନା ଜାହାଜ କିମ୍ବା ନୌକା ସାହାଯ୍ୟରେ ଏଡ଼େ ଏଡ଼େ ବୃହତ୍ ଶିଳାଖଣ୍ଡମାନ ଆସିବା ଅସମ୍ଭବ ମନେ ହୁଏ। ଅତଏବ ସ୍ପଷ୍ଟ ଅନୁମିତ ହୁଏ, ସେତେବେଳେ କୋଣାର୍କ ନିକଟରେ ସୁବିଶାଳ ସୁନାବ୍ୟା ବୃହତ୍ ନଦୀ ଥିଲା। ବଡ଼ ବଡ଼ ବୋଇତରେ ଓଡ଼ିଆ ନାବିକମାନେ ସୁଦୂର ଗଡ଼ଜାତ ଜଙ୍ଗଲରୁ ସେହି ପର୍ବତ-ରୂପୀ ଶିଳାଖଣ୍ଡମାନ ଅନାୟାସ ଓ ଅକ୍ଳେଶରେ ବୋହିଆଣି କୋଣାର୍କ ମନ୍ଦିର ଗଠନରେ ବ୍ୟବହାର କରିଥିଲେ।

କେବଳ ଏତିକି ନୁହେଁ, ଓଡ଼ିଶାରେ ପ୍ରଚଳିତ ନାନା କଥା, କାହାଣୀ, ଗଳ୍ପ, କିମ୍ବଦନ୍ତୀ, ଢଗ ଓ ପଦାଣୀରୁ ମଧ୍ୟ ଜଣାଯାଏ ଯେ ପ୍ରାଚୀନ ଉତ୍କଳୀୟମାନେ ନୌବାଣିଜ୍ୟରେ ସୁପ୍ରସିଦ୍ଧ ଥିଲେ *। ଏପରି କି ଇଂରେଜମାନଙ୍କର ଆଗମନ ପର୍ଯ୍ୟନ୍ତ ଓଡ଼ିଶାର ବାଲେଶ୍ୱର ଓ ଅନ୍ୟାନ୍ୟ ସ୍ଥାନମାନ ସମୁଦ୍ର-ବାଣିଜ୍ୟ ନିମନ୍ତେ ପ୍ରସିଦ୍ଧ ଥିଲେ। ଏବେ ସୁଦ୍ଧା ତାର ସ୍ମୃତି ଚିହ୍ନ ଜୀବିତ ଅଛି। କିନ୍ତୁ ଓଡ଼ିଆର ଶିଳ୍ପ-ସ୍ଥାପତ୍ୟ ପରି ତାହାର ନୌବାଣିଜ୍ୟ, ପୋତ-ନିର୍ମାଣକୁଶଳତା କିପରି କାହିଁକି କେତେବେଳେ, କେଉଁ

---

* The Prachi—vol 2, part 1—'The sea in the folklore of Orissa' p. 49-73

ଦେବତାର ନିର୍ମମ ଅଭିସମ୍ପାତରେ ଧ୍ୱଂସ ଓ ଲୁପ୍ତ ହେଲା ତାହା କେବଳ ସେହି ସର୍ବଗ୍ରାସୀ କାଳକୁ ଗୋଚର । ତେଣୁ ଆମମାନଙ୍କର ଅଳ୍ପ ଅପ୍ରତ୍ୟୟ ନାହିଁ—ନିଜର ଅତୀତ ଐତିହାସିକ ବୈଭବ କିମ୍ବା ବିଭୂତିରେ ବିଶେଷ ବିଶ୍ୱାସ ନାହିଁ, ନିଜର ଅତୀତ ଗୌରବରେ ଛାତି ଫୁଲାଇ ଦାଣ୍ଡରେ ଚାଲିବାର ପ୍ରବୃତ୍ତି ତାହାର ଏ ପର୍ଯ୍ୟନ୍ତ ହୋଇ ନାହିଁ; ସୁତରାଂ ଏ ଜାତି ସୁଦୂର ଅତୀତର ବିରାଟ ଗୌରବ ଓ ସମ୍ପଦ କେବେ ଯେ ଫେରି ପାଇବ, କେବେ ଯେ ଏହି ଜାତିର ଶିଳ୍ପ, ସ୍ଥାପତ୍ୟ, ବାଣିଜ୍ୟ, ସଭ୍ୟତା ଓ ସଂସ୍କୃତି ଉଜ୍ଜୀବିତ ହୋଇ ଉଠିବ ତାହା କିଏ କହି ପାରେ ?



## ପ୍ରାଚୀନ ଭାରତରେ ଗୋଷ୍ଠୀ ଜୀବନ

ଭାରତବର୍ଷର ଇତିହାସ-ଲେଖକ ପ୍ରଧାନତଃ ବୈଦେଶିକ ପଣ୍ଡିତଗଣ । ସୁତରାଂ ଏମାନେ ଅନେକ ସମୟରେ କଠୋର ଐତିହାସିକ ସତ୍ୟମାନଙ୍କର ଅପଲାପ କରିଥିବାର ଦେଖାଯାଏ । ପ୍ରାଚୀନ ଭାରତର ସଂସ୍କୃତି ଓ ସଭ୍ୟତାର ଇତିହାସ ଆଲୋଚନା କରିବାକୁ ଗଲେ ତତ୍କାଳୀନ ବୈଦିକ ସାହିତ୍ୟ, ପୁରାଣ, ମହାକାବ୍ୟ, କାବ୍ୟ ଓ ଅନ୍ୟାନ୍ୟ ସମସାମୟିକ ସଂସ୍କୃତ ସାହିତ୍ୟ ତନ୍ନ ତନ୍ନ କରି ପଢ଼ିବାକୁ ହେବ । ପ୍ରାଚୀନ ହିନ୍ଦୁ ପଣ୍ଡିତମାନେ ମୁଖ୍ୟତଃ ଇତିହାସ ଗ୍ରନ୍ଥ ଲେଖିଯାଇ ନ ଥିଲେ ସୁଦ୍ଧା, ସେମାନେ ବିରାଟ ସଂସ୍କୃତ ଗ୍ରନ୍ଥମାନଙ୍କରେ ଅବାନ୍ତରଭାବରେ ନାନା ଐତିହାସିକ ସତ୍ୟର ଅବତାରଣା କରିଅଛନ୍ତି । ସେଗୁଡ଼ିକ ସାବଧାନତାର ସହିତ ଅନୁସନ୍ଧାନ ନ କରି ଭାରତର ମୌଳିକ ସଭ୍ୟତା ଓ ସଂସ୍କୃତି ପ୍ରତି ଅଯଥା ଆକ୍ରୋଶ କରିବା କୌଣସି ହିଦସ୍ପୃହାନ୍ ଓ ବସ୍ତୁନିଷ୍ଠ-

ଅପର ଐତିହାସିକର କର୍ତ୍ତବ୍ୟ ନୁହେଁ । କୌଣସି କୌଣସି ଇଉରୋପୀୟ ସମାଲୋଚକ କହନ୍ତି, ଭାରତର ସଭ୍ୟତା ମୌଳିକ ନୁହେଁ, ଏହା ଗ୍ରୀସ୍ କିମ୍ବା ରୋମ୍‌ରୁ ଆନୀତ । କିନ୍ତୁ ଅଳ୍ପ ଦିନ ହେଲା ହରପ୍ପା ଓ ମହେଞ୍ଜଦାରୋରୁ ପ୍ରତ୍ନତତ୍ତ୍ୱ ବିଭାଗ ଯେଉଁ ବିପୁଳ ଓ ମହନୀୟ ଧ୍ୱଂସାବଶେଷମାନ ଆବିଷ୍କାର କରିଅଛନ୍ତି, ସେଥିରୁ ଦୃଢ଼-ଭାବରେ ପ୍ରମାଣ କରାଯାଇ ପାରେ ଯେ, ଆର୍ଯ୍ୟମାନଙ୍କ ଆଗମନର ପ୍ରାୟ ଦୁଇସହସ୍ର ବର୍ଷ ପୂର୍ବରୁ ସିନ୍ଧୁନଦୀ କୂଳରେ ଏକ ସୁସଭ୍ୟ ଓ ଉନ୍ନତ ଜାତି ବାସ କରୁଥିଲେ । ସେମାନଙ୍କର ମଣ୍ଡନପ୍ରିୟତା, ନିର୍ମାଣ-କୌଶଳ ଓ ଅସ୍ତ୍ରର ବ୍ୟବହାର ଆଧୁନିକ କୌଣସି ଉନ୍ନତ ଜାତିଠାରୁ ନ୍ୟୂନ ନ ଥିଲା । ବାସ୍ତବରେ ମାନବ-ସଭ୍ୟତାର ଆଦିମ ଲୀଳା-ନିକେତନ ଆମ୍ଭର ଏହି ଭାରତ-ଭୂମି * । ମୋକ୍ଷମୂଲର ପ୍ରଭୃତି ପାଶ୍ଚାତ୍ୟ ପଣ୍ଡିତମାନେ ଭାରତର ଦର୍ଶନ ଓ ସାହିତ୍ୟରେ ମୁଗ୍ଧ ହୋଇ ଇଂରେଜୀଭାଷାରେ ବହୁ ଗ୍ରନ୍ଥମାନ ଲେଖିଯାଇଅଛନ୍ତି । ସେହିମାନେହିଁ କେବଳ ଭାରତର ପ୍ରାଚୀନ ସଭ୍ୟତା ଓ ସଂସ୍କୃତିର ମର୍ଯ୍ୟାଦା ବୁଝିଥିଲେ ଏବଂ ଏହି ଶ୍ରେଣୀର ଐତିହାସିକମାନେ ଆମ୍ଭମାନଙ୍କର ନମସ୍ୟ । ନିଜେ ଲର୍ଡ଼ କର୍ଜ୍ଜନ ୧୯୦୧ ଖ୍ରୀଷ୍ଟାବ୍ଦରେ ଅନୁଷ୍ଠିତ ଦିଲ୍ଲୀ-ଦରବାରରେ ମୁକ୍ତକଣ୍ଠରେ କହିଥିଲେ, "ଇଂରେଜ-ମାନେ ଅସଭ୍ୟ ଓ ଅନୁନ୍ନତ ଅବସ୍ଥାରେ ଥାଇ ବନ ଜଙ୍ଗଲରେ ବିଚରଣ କରୁଥିଲା ବେଳେ ଭାରତରେ ସମୃଦ୍ଧିଶାଳୀ ରାଜ୍ୟମାନଙ୍କର ଉତ୍ଥାନ ହୋଇଥିଲା ଏବଂ ସମଗ୍ର ମାନବ-ଜାତିର ଧର୍ମ, ଦର୍ଶନ ଓ ଇତିହାସ ଉପରେ ଭାରତର ସଭ୍ୟତା ଯେତେ ପ୍ରଭାବ ବିସ୍ତାର

---

* 'Earliest cardle of human civilization 'The Modern Review' Feb. 1936. P. 219.

କରିଅଛି ଆଜ କୌଣସି ଦେଶର ସଭ୍ୟତା ସେପରି କରି ପାରି ନାହିଁ *। ଏହିମାନେହିଁ ଭାରତର ପ୍ରକୃତ ଐତିହାସିକ।

ଭାରତର ପ୍ରାଚୀନ ସଭ୍ୟତାକୁ ଅନୁସନ୍ଧାନ କରିବାକୁ ଯାଇ କେତେ କେତେ ଐତିହାସିକ ସମାଲୋଚନା-ସୂତ୍ରରେ କହୁଥାନ୍ତି, ପ୍ରାଚୀନ ଭାରତର ଲୋକମାନଙ୍କ ମଧ୍ୟରେ ସାମାଜିକ ଜୀବନ କିମ୍ବା ଗୋଷ୍ଠୀ ଜୀବନର ଆଦୌ ବିକାଶ ହୋଇ ନ ଥିଲା। ଅର୍ଥାତ୍ ଦଳବଦ୍ଧ ଭାବରେ ଆମୋଦ ପ୍ରମୋଦ, ଶାସ୍ତ୍ରଚର୍ଚ୍ଚା ଓ ସଙ୍ଗୀତଚର୍ଚ୍ଚା କରିବା ସେମାନଙ୍କୁ ଜଣା ନ ଥିଲା। ଆଜିକାଲି ପ୍ରତ୍ୟେକ ସହର ଓ ପ୍ରଧାନ ସ୍ଥାନମାନଙ୍କରେ ଯେପରି ବାବୁଭାୟା ଓ ଶିକ୍ଷିତଶ୍ରେଣୀର ଲୋକମାନେ ଗୋଟିଏ ଗୋଟିଏ କ୍ଲବ ସ୍ଥାପନ କରି ପ୍ରତ୍ୟହ ସନ୍ଧ୍ୟାରେ ହାସ ପଶା, ଆମୋଦ ପ୍ରମୋଦ, ଖେଳ କୌତୁକ, ପୁସ୍ତକପାଠ, ନାନାପ୍ରକାର ଗଳ୍ପ ଓ କଥୋପକଥନରେ ସମୟ କଟାନ୍ତି ସେହିପରି କ୍ଲବ ପ୍ରାଚୀନ ଭାରତରେ ଆଦୌ ନ ଥିଲା ବୋଲି ଅନେକଙ୍କର ଧାରଣା। ଏପରି ଗୋଷ୍ଠୀଜୀବନ ସମାଜ ପ୍ରତି ବଡ଼ ମଙ୍ଗଳଜନକ। ଏହା ଲୋକମାନଙ୍କ ମଧ୍ୟରେ ଏକତା ଆଣେ ଏବଂ ପରସ୍ପର ମଧ୍ୟରେ ସୌହାର୍ଦ୍ଦ୍ୟ ମଧ୍ୟ ବୃଦ୍ଧି କରେ। ଅତଏବ ଦର୍ଶିଆନ ପ୍ରମାଣ କରାଯାଉ, ବାସ୍ତବିକ

---

* 'Powerful Empires existed and flourished here (India) while Englishmen where still wandering painted in the woods and while the British colonies were still a wilderness and a jungle. India has left a deeper mark upon the history, the philosophy, and the religion of mankind, than any other terresstrial unit in the universe. Lord Curzon-(Modern Review, Feb. 1936, P.192)

ପ୍ରାଚୀନ ଭାରତରେ ଏପରି କ୍ଲବ ସବୁ ସ୍ଥାନେ ସ୍ଥାନେ ବହୁ ପରିମାଣରେ ଥିଲା ଏବଂ ସେତେବେଳେ ଗୋଷ୍ଠୀ ଜୀବନର ବିକାଶ ଓ ଅଭିବୃଦ୍ଧି ପୂର୍ଣ୍ଣତା ପାଇଥିଲା ।

ଏହି ବିଷୟ ଐତିହାସିକ ଦୃଷ୍ଟିରୁ ଆଲୋଚନା କରିଗଲେ ଆମ୍ଭମାନଙ୍କୁ କ୍ଲବ କିମ୍ବା 'ଗୋଷ୍ଠୀ' ଅର୍ଥସୂଚକ କିମ୍ବା ସେହି ଭାବବ୍ୟଞ୍ଜକ କେତେଗୋଟି ଶବ୍ଦକୁ ବିଶ୍ଳେଷଣ କରି ସେମାନଙ୍କର ତାତ୍ପର୍ଯ୍ୟ ବୁଝିବାକୁ ହେବ । 'ସଭା', 'ପରିଷଦ୍', 'ସଦ', 'ସମାଜ,' 'ଗଣ' ଓ 'ଗୋଷ୍ଠୀ' ଏହି ଶବ୍ଦ ଗୁଡ଼ିକର ଅର୍ଥ ପରବର୍ତ୍ତୀ କାଳରେ ଯେ ଆକାର ଧାରଣ କରୁ ପଛେ, ଏ ପ୍ରତ୍ୟେକ ଶବ୍ଦର ମୌଳିକ ଅକ୍ଷରିକ ଅର୍ଥ ହେଉଅଛି କେତେକ ଲୋକଙ୍କର ଏକତ୍ର ସମାବେଶ । ଯଜୁର୍ବେଦରେ 'ଗଣ ଯଜ୍ଞ' ବୋଲି ଯେଉଁ ଯଜ୍ଞର ଉଲ୍ଲେଖ ଅଛି ତାହାର ଅର୍ଥ କେତେକ ଲୋକ ଏକତ୍ର ମିଳିତ ହୋଇ ସେହି ଯଜ୍ଞ ଅନୁଷ୍ଠାନ କରନ୍ତି । ଏହି ହୋମର ଅନ୍ୟ ନାମ ମଧ୍ୟ 'ମରୁତ୍‌ସ୍ତୋମ' । ବନ୍ଧୁ କିମ୍ବା ଭ୍ରାତାମାନେ ଏକତ୍ର ମିଳିତ ହୋଇ ଏହି ଯଜ୍ଞ ଅନୁଷ୍ଠାନ କରନ୍ତି * । ବର୍ତ୍ତମାନ ବଙ୍ଗଳାରେ ବାରଜଣ ସଖାଙ୍କ ଦ୍ୱାରା ଯେଉଁ 'ବାରଓ୍ୟାରି' ପୂଜା ପ୍ରଚଳିତ ହୋଇ ଆସୁଅଛି ତାହା ଏହି 'ମରୁତ୍‌ସ୍ତୋମ'ର ରୂପାନ୍ତର ମାତ୍ର । ସେ ଯାହାହେଉ, ଲୋକମାନଙ୍କ ମଧ୍ୟରେ ଅକୃତ୍ରିମ ଭ୍ରାତୃଭାବ ଓ ସୌହାର୍ଦ୍ଦ୍ୟ ସ୍ଥାପନ କରିବା ନିମନ୍ତେ ପୂର୍ବକାଳରେ ଭାରତରେ ନାନାପ୍ରକାର ସାମାଜିକ ଅନୁଷ୍ଠାନର ପ୍ରଚଳନ ଥିଲା । ଏହି ଭ୍ରାତୃଭାବ ଓ ସ୍ନେହ କାଳକ୍ରମେ ଏତେ ଘନିଷ୍ଠ ହୋଇ ଉଠିଲା ଯେ ଈଶ୍ୱରଙ୍କୁ ମଧ୍ୟ ଲୋକେ ସଖା ବୋଲି ସମ୍ବୋଧନ କଲେ । ଯାଜ୍ଞବଲ୍‌କ୍ୟ ମହର୍ଷି

---

* ଭ୍ରାତୃଣାଂ ସଖୀନାଂ ବା କର୍ତ୍ତବ୍ୟାଃ ଯଜ୍ଞାଃ"

ସ୍ମୃତ୍ୟେକ ଚାନ୍ଦ୍ରାୟଣ ପ୍ରଭୃତି କଠୋର ଧର୍ମାଚାରର ବ୍ୟବସ୍ଥା କରିଥିଲେ। କିନ୍ତୁ ଅପରାହ୍ଣ କିମ୍ବା ସନ୍ଧ୍ୟା ସମୟ କୌଣସି ଧର୍ମକାର୍ଯ୍ୟରେ ବ୍ୟସ୍ତ ନ ରହି ବୁଦ୍ଧିମାନ୍, ଶିକ୍ଷିତ ଓ ଶିଷ୍ଟ ଲୋକଙ୍କ ସଂସର୍ଗରେ କାଳଯାପନ କରିବାକୁ ସେ ଲୋକମାନଙ୍କୁ ପରାମର୍ଶ ଦେଇଥିଲେ। ଅର୍ଥାତ୍ ଗୋଷ୍ଠୀଜୀବନ ଅଥବା କ୍ଲବ୍ ଜୀବନର ବୀଜ ଏହିଠାରେ ନିହିତ ଥିଲା ବୋଲି ବୁଝିବାକୁ ହେବ। 'ଗଣ ଚକ୍ର' ବୋଲି ଆଉ ଗୋଟିଏ ଶବ୍ଦ ଅଛି। ଏହାର ଅର୍ଥ କେତେକ ଧର୍ମପରାୟଣ ଲୋକଙ୍କର ଏକତ୍ର ସମାବେଶ, ଆଳାପ ଓ ଭୋଜନ। ଆଜିକାଲି କ୍ଲବମାନଙ୍କରେ ଯେପରି ଭୋଜି, ସୁରା ପାନ ଓ ନାନାପ୍ରକାର ଆମୋଦପ୍ରମୋଦର ବ୍ୟବସ୍ଥା ଥାଏ, ପ୍ରାଚୀନ ଭାରତରେ ମଧ୍ୟ ଲୋକେ ସେହିପରି ଏକତ୍ର ବସି ସନ୍ଧ୍ୟା ସମୟରେ ନାନାପ୍ରକାର ଆମୋଦ ପ୍ରମୋଦରେ କାଳ କଟାଉଥିଲେ।

ଏହି ପ୍ରାଚୀନ ଗୋଷ୍ଠୀ କିମ୍ବା କ୍ଲବମାନଙ୍କର ମୌଳିକ ଉଦ୍ଦେଶ୍ୟ ଥିଲା ଧର୍ମଚର୍ଚ୍ଚା ଓ ଶାସ୍ତ୍ରାଲୋଚନା। କିନ୍ତୁ କାଳକ୍ରମେ ଏହି 'ଗଣଚକ୍ର' ପ୍ରଭୃତି ଅନୁଷ୍ଠାନମାନଙ୍କରେ ମଧ୍ୟ ସାହିତ୍ୟ ଓ ସଂସ୍କାର ସମ୍ବନ୍ଧୀୟ ଅନ୍ୟାନ୍ୟ ଆଲୋଚନା ଆରମ୍ଭ ହେଲା। ଯେଉଁ ଲୋକମାନେ ଶାସ୍ତ୍ରନିପୁଣ, ନିଷ୍କଳଙ୍କଚରିତ୍ର, ସଦ୍‌ବଂଶଜାତ, ଆତ୍ମମର୍ଯ୍ୟାଦାଜ୍ଞାନ-ସମ୍ପନ୍ନ, ଯେଉଁମାନେ ରସିକତା, କାବ୍ୟକଳାଦ୍ୱାରା ଗୋଷ୍ଠୀର ଅନ୍ୟାନ୍ୟ ସଭ୍ୟମାନଙ୍କୁ ଆନନ୍ଦ ଦିଅନ୍ତି ଏବଂ ଯେଉଁମାନେ ଶ୍ରୀମଦ୍‌ଭାଗବତ ପାଠ କରି ଗୋଷ୍ଠୀର ଅନ୍ୟାନ୍ୟ ସଭ୍ୟମାନଙ୍କର ଧର୍ମ-କ୍ଷୁଧା ନିବାରଣ କରି ପାରନ୍ତି—ସେହିପରି ଲୋକମାନଙ୍କଦ୍ୱାରା ଗଠିତ ଅନୁଷ୍ଠାନକୁ ଗୋଷ୍ଠୀ କୁହାଯାଉଥିଲା।* ପ୍ରତ୍ୟେକ ଗୋଷ୍ଠୀରେ ଜଣେ

---

* ନାନାଶାସ୍ତ୍ରବିଶାରଦୈଃ ଧନିକତା ସତ୍କାବ୍ୟ ସମ୍ମୋଦିତା,
ଔଦାର୍ଯ୍ୟୋନ୍ନତୈଃ କୁଳଭୂଷଣୈଃ ଧର୍ମନିଷ୍ଠାପୂର୍ଣ୍ଣୈ କୁଳଶ୍ରେଷ୍ଠୈରପି—ଶବ୍ଦକଳ୍ପଦ୍ରୁମ।

ଜଣେ 'ଗୋଷ୍ଠୀପତି' ଥିଲେ । ଗୋଷ୍ଠୀମାନଙ୍କୁ ସୁନ୍ଦର ଭାବରେ ପରିଚାଳିତ କରିବା ଏହି ଗୋଷ୍ଠୀପତିମାନଙ୍କର ପ୍ରଧାନ କାର୍ଯ୍ୟ । ବର୍ତ୍ତମାନ ଆମ୍ଭମାନଙ୍କ ହିନ୍ଦୁ ସମାଜରୁ 'ଗୋଷ୍ଠୀ' ଶବ୍ଦ ଲୋପ ପାଇଥିଲେ ସୁଦ୍ଧା 'ହରି-ସଭା' ପ୍ରଭୃତି ଧର୍ମାନୁଷ୍ଠାନମାନ ସେହି ଶ୍ରେଣୀର ଅନ୍ତର୍ଗତ । ମହାପ୍ରଭୁ ଶ୍ରୀଚୈତନ୍ୟଙ୍କ ସମୟରେ ମଧ୍ୟ ସ୍ଥାନେ ସ୍ଥାନେ ବଙ୍ଗ ଓ ଉତ୍କଳରେ ଗୋଷ୍ଠୀ ସବୁ ଥିଲା । 'ଶ୍ରୀଚୈତନ୍ୟ ଭାଗବତ'ରେ ମଧ୍ୟ 'ଗୋଷ୍ଠୀ'ର ଉଲ୍ଲେଖ ଦେଖାଯାଏ * ।

କେବଳ ଧର୍ମ ଓ ଚିତ୍ତବିନୋଦନ ନିମନ୍ତେ ଯେ ଏହି ଗୋଷ୍ଠୀ ସବୁର ରଚନା କରାଯାଇଥିଲା ତାହା ନୁହେଁ । ଅନେକ ଗୋଷ୍ଠୀ-ମାନଙ୍କରେ ମଧ୍ୟ ଆମୋଦ ପ୍ରମୋଦ ଓ ଖେଳକୌତୁକ ସ୍ଥାନ ପାଉଥିଲା । ଋଗ୍‌ବେଦରେ 'କ୍ରୀଡ଼ାଚକ୍ର'ର ଉଲ୍ଲେଖ ଅଛି † । ମହାଭାରତ ସଭାପର୍ବରେ ମଧ୍ୟ ଉଲ୍ଲେଖ ଅଛି, କୁରୁପତି ଦୁର୍ଯ୍ୟୋଧନ ଦ୍ୟୂତକ୍ରୀଡ଼ା ନିମନ୍ତେ ଯୁଧିଷ୍ଠିରଙ୍କୁ ଯେଉଁ 'ସଭା'କୁ ଆହ୍ୱାନ କରିଥିଲେ ତାହା ମଧ୍ୟ ଏକ ପ୍ରକାର 'କ୍ରୀଡ଼ା-ଚକ୍ର'—ଆଧୁନିକ କ୍ଲବ୍‌ର ରୂପାନ୍ତର ମାତ୍ର । ‡

ଋଗ୍‌ବେଦରେ ମଧ୍ୟ ମଦ୍ୟପାନ ନିମନ୍ତେ ସ୍ଥାନେ ସ୍ଥାନେ ଗୋଷ୍ଠୀ ସ୍ଥାପିତ ହୋଇଥିବାର ଉଲ୍ଲେଖ ଅଛି । ସୋମରସ ପ୍ରସ୍ତୁତ କରିବା ନିମନ୍ତେ ଯେଉଁ ସ୍ଥାନ ନିର୍ଦ୍ଦିଷ୍ଟ ଥିଲା ତାହାକୁ ଦେବତାମାନଙ୍କର ଗୋଷ୍ଠୀ କିମ୍ବା କ୍ଲବ୍ ବୋଲି କୁହାଯାଉଥିଲା । ସୋମରସ ଅପେକ୍ଷାମେଧ୍ୟ ବଳ ଓ ଦୀର୍ଘାୟୁ ଦିଏ ବୋଲି ସେକାଳେ ଲୋକଙ୍କର ବିଶ୍ୱାସ

* 'The Journal of the B. O. Research Society Vol III, part 3—p. 408

† Rigveda, 10, 34, 6

‡ ମହାଭାରତ, ସଭାପର୍ବ ୬୦

ଥିବାରୁ ପ୍ରତ୍ୟେକ ଲୋକଙ୍କ ଘରେ ଏହି ଅମୃତଙ୍କଲ୍ପ ସୋମରସ ପାନ କରିବା ନିମନ୍ତେ ବନ୍ଧୁବାନ୍ଧବମାନଙ୍କର ସମାଗମ ହେଉଥିଲା । ଏହି ସମାବେଶରୁ 'ପାନଭୂମି' ଓ 'ଆପାନକ' ଶବ୍ଦର ଉଦ୍ଭବ ଓ ଉତ୍ପତ୍ତି *। ପ୍ରତ୍ୟେକ ଗୃହସ୍ଥ ବନ୍ଧୁବାନ୍ଧବମାନଙ୍କ ସହିତ ସୋମରସ ପାନ କରିବା ନିମନ୍ତେ ନିଜ ଗୃହ ମଧ୍ୟରୁ ଗୋଟିଏ ବଖରା ଅଲଗା ରଖୁଥିଲା । ଏହାକୁ 'ପାନଭୂମି, କିମ୍ବା 'ଆପାନକ' କୁହାଯାଉଥିଲା ।† ପ୍ରତ୍ୟେକ ବନ୍ଧୁବାନ୍ଧବ ଓ ଆତ୍ମୀୟସ୍ୱଜନମାନଙ୍କୁ ଏକତ୍ର କରି ପାନାହାର ଛଳରେ ସେମାନଙ୍କ ସହିତ ସ୍ୱତନ୍ତ୍ର ଯଜ୍ଞାନପ୍ରଧାନ କରିବା ସେ ଯୁଗରେ ପ୍ରତ୍ୟେକ ଗୃହସ୍ଥର କର୍ତ୍ତବ୍ୟ ଥିଲା । ସୁତରାଂ ବୈଦିକଯୁଗରେ ଯେ ଆର୍ଯ୍ୟମାନଙ୍କ ମଧ୍ୟରେ କ୍ଲବ, କିମ୍ବା ଗୋଷ୍ଠୀଜୀବନର ବିକାଶ ହୋଇଥିଲା ଏଥିରେ ସନ୍ଦେହ କରିବାର କୌଣସି ଅବକାଶ ନାହିଁ ।

ମହାଭାରତର ନାନା ସ୍ଥାନରେ ମଧ୍ୟ 'ଅକ୍ରୀଡ଼ ଭୂମି' ଶବ୍ଦର ଉଲ୍ଲେଖ ଅଛି । ଯେଉଁସ୍ଥାନରେ ଲୋକେ ନାନାପ୍ରକାର ଆମୋଦ-ପ୍ରମୋଦ, କ୍ରୀଡ଼ା-କୌତୁକ ଓ ବିଳାସ-ବ୍ୟସନରେ କାଳ କଟାନ୍ତି ସେହି ସ୍ଥାନକୁ 'ଅକ୍ରୀଡ଼ ଭୂମି' କହନ୍ତି । ମହାଭାରତରେ 'ବିହାର' ଶବ୍ଦ ମଧ୍ୟ ଠିକ୍ ଏହି ଅର୍ଥରେ ବ୍ୟବହୃତ ହୋଇଅଛି । ଏହି ମହାକାବ୍ୟରେ ମଧ୍ୟ 'ସମାଜ' ଓ 'ସମାଜୋତ୍ସବ' ଶବ୍ଦ ସବୁ ଠିକ୍ କ୍ଲବ କିମ୍ବା ଗୋଷ୍ଠୀ ଅର୍ଥରେ ବ୍ୟବହୃତ ହୋଇ ନ ଥିଲେ ମଧ୍ୟ ସେଗୁଡ଼ିକ ବର୍ତ୍ତମାନ କରି ଦେଖିଲେ ଜଣାଯାଏ, ଉତ୍କଳ ଏକତ୍ର ସମାବିଷ୍ଟ ହୋଇ ଯେଉଁ ଉତ୍ସବମାନ ପାଳନ କରୁଥିଲେ ତାହାକୁହିଁ 'ସମାଜ' କିମ୍ବା 'ସମାଜୋତ୍ସବ' କୁହାଯାଉଥିଲା । ଭାରତବର୍ଷରେ

* ଆପାନଂ ପାନଗୋଷ୍ଠିକା; ଅମରକୋଷ P 43

† ରଘୁବଂଶ—Canto, 19, 11
କୁମାରସମ୍ଭବ—Canto-VI. 42

ଯେଉଁ 'ଘଟ୍ଟ' ଶବ୍ଦର ଉଲ୍ଲେଖ ଅଛି ସେଥିରୁ ମଧ୍ୟ ଜଣାପଡ଼େ, ସେ ଯୁଗରେ ଆମୋଦ-ପ୍ରମୋଦ ନିମନ୍ତେ ଯୁବକମାନଙ୍କର ଗୋଟିଏ ନିର୍ଦ୍ଦିଷ୍ଟ ଗୃହ ଥିଲା । ସୁତରାଂ ପ୍ରାଚୀନ ଭାରତରେ କ୍ଲବ୍ ନ ଥିଲା ଏବଂ ଗୋଷ୍ଠୀ ଜୀବନର ସତ୍ତା ପର୍ଯ୍ୟନ୍ତ ନ ଥିଲା ବୋଲି ଯେଉଁମାନେ ଅସ୍ଫାଳନ କରନ୍ତି ସେମାନଙ୍କର ମତ ଭ୍ରାନ୍ତ * ।

ଅତଏବ ସ୍ପଷ୍ଟ ସୂଚନା ମିଳେ 'ଗୋଷ୍ଠୀ' 'ମଲ୍ଲଭସ୍ତୋମ' 'ଗଣିକେଳ' 'ପାନଭୂମି' 'ଆପାନକ' 'ଅକ୍ରୀଡ଼ଭୂମି' 'ବିହାର' ଓ 'ସଭା' ପ୍ରଭୃତି ପ୍ରାଚୀନ ଅନୁଷ୍ଠାନମାନଙ୍କର ଆଧୁନିକ ସଭ୍ୟଜନସମାଦୃତ କ୍ଲବମାନଙ୍କ ସହିତ ଢେର ସୌସାଦୃଶ୍ୟ ଅଛି । ବର୍ତ୍ତମାନ ଦେଖାଯାଉ ଏହି ପ୍ରାଚୀନ ଗୋଷ୍ଠୀ କିମ୍ବା କ୍ଲବମାନଙ୍କର ସଂଜ୍ଞା ସ୍ୱରୂପ, ପ୍ରକୃତି ଗଠନ, ନିୟମ ଓ ଶୃଙ୍ଖଳା ପ୍ରଭୃତି କିପରି ଥିଲା । 'କାମସୂତ୍ର'ର ଚତୁର୍ଥ ଅଧ୍ୟାୟରେ ଏହି ଗୋଷ୍ଠୀର ସଂଜ୍ଞା ଦିଆ ଯାଇଅଛି 'ସମାନ ବିଦ୍ୟାବୁଦ୍ଧିଶୀଳ ବିତ୍ତବୟସାଂ......ଅନୁରୂପେ ଆଳାପୈରାସନବନ୍ଧୋ ଗୋଷ୍ଠୀ...' ଯେଉଁ ସାଧାରଣ ଅନୁଷ୍ଠାନରେ କିମ୍ବା ବ୍ୟକ୍ତି ବିଶେଷଙ୍କର ନିର୍ଦ୍ଦିଷ୍ଟ ଗୃହରେ ଆମୋଦ-ପ୍ରମୋଦ ନିମନ୍ତେ କିମ୍ବା ଶିଷ୍ଟ ଓ ସୁନ୍ଦର ଆଳାପ କରିବା ନିମନ୍ତେ ସମାନ ବୟସ, ଶିକ୍ଷା ଓ ସମ୍ପତ୍ତି, ସମାନ ବୁଦ୍ଧି, ବିଦ୍ୟା, କୌଳିନ୍ୟ ଓ ସମ୍ପଦର ଲୋକମାନେ ଏକତ୍ର ହୁଅନ୍ତି ସେହି ଅନୁଷ୍ଠାନ କିମ୍ବା ଗୃହକୁ 'ଗୋଷ୍ଠୀ' କୁହାଯାଏ † । କାମସୂତ୍ରକାର ବାତ୍ସ୍ୟାୟନ ମଧ୍ୟ ବ୍ୟବସ୍ଥା ଦେଇଅଛନ୍ତି "କୃତ ପ୍ରସାଧନସ୍ୟ ଅପରାହ୍ଣେ ଗୋଷ୍ଠୀ ବିହାରଃ" । ବେଶ-ପ୍ରସାଧନ ସମାପନ କରି

* The journal of the Bihar and Orissa Research Society, p. 410-411, (Vol III-3)

† B. & O, R, S. journal, p. 411 (vol-3)

ପ୍ରତ୍ୟେକ ଲୋକ ଅପରାହ୍ଣ କିମ୍ବା ସନ୍ଧ୍ୟାରେ ଗୋଷ୍ଠୀର ଆମୋଦ-ପ୍ରମୋଦରେ ଯୋଗ ଦେବେ । ଗୋଷ୍ଠୀରେ ଯୋଗ ଦେଇ ଯୁବକମାନେ 'କାବ୍ୟ ଓ କଳା ସମସ୍ୟା' ଆଲୋଚନା କରିବେ । 'କଳା' ଶବ୍ଦ ବ୍ୟାପକ । ଆମ୍ଭମାନଙ୍କର ପ୍ରାଚୀନ ଶାସ୍ତ୍ରମାନଙ୍କରେ ୬୪ କଳାର ଉଲ୍ଲେଖ ଅଛି । ଏହି ଗୋଷ୍ଠୀରେ ଯୁବକମାନଙ୍କୁ ନିଜ ନିଜର ରୁଚି ଅନୁସାରେ ସମସ୍ତ ପ୍ରକାର କଳାର ଆଲୋଚନା କରିବାକୁ ପଡ଼ୁଥିଲା । ସଙ୍ଗୀତ ଓ ନାନାପ୍ରକାର ଖେଳ ମଧ୍ୟ ଗୋଷ୍ଠୀରେ ସ୍ଥାନ ପାଉଥିଲା । ଅତି ପ୍ରାଚୀନ କାଳରୁ ସ୍ତ୍ରୀଲୋକମାନେ ସର୍ବସାଧାରଣ ସମ୍ମୁଖରେ ସଙ୍ଗୀତ ଗାନ କରିବାର ପ୍ରଥା ନିଷିଦ୍ଧ ଥିବାରୁ ସେମାନେ ନିଜ ନିଜ ଘରେ ନିର୍ଦ୍ଦିଷ୍ଟ ଥିବା ଗୋଷ୍ଠୀ ଗୃହରେ ଗାନ କରି ସହର ଓ ଗ୍ରାମର ସଙ୍ଗୀତପିପାସୁ ଲୋକମାନଙ୍କର ଚିତ୍ତବିନୋଦନ କରୁଥିଲେ । କୌଣସି କୌଣସି ସ୍ଥାନରେ ଗୋଷ୍ଠୀମାନଙ୍କରେ ମଧ୍ୟ ସ୍ତ୍ରୀଲୋକମାନେ ଗାନ କରୁଥିଲେ । ଆଜିକାଲି ଇଉରୋପୀୟ ଓ ତାହାର ଅନୁକରଣରେ ସ୍ଥାପିତ କ୍ଲବମାନଙ୍କରେ ଯେପରି ମଦ୍ୟପାନର ସାମାନ୍ୟ ବ୍ୟବସ୍ଥା ସ୍ଥଳବିଶେଷରେ ଥାଏ, ପ୍ରାଚୀନ ଭାରତର ଗୋଷ୍ଠୀରେ ସେପରି ନ ଥିଲା । ସୋମରସ ପାନର ବ୍ୟବସ୍ଥା କେବଳ 'ପାନଭୂମି' କିମ୍ବା 'ଆପାନକ'ରେ ଥିଲା । ଏହି 'ପାନଭୂମି' କିମ୍ବା 'ଆପାନକ' କୌଣସି ସର୍ବସାଧାରଣ ସ୍ଥାନରେ ସ୍ଥାପିତ ନ ହୋଇ ବ୍ୟକ୍ତିବିଶେଷଙ୍କ ଗୃହରେ ସଂଲଗ୍ନ ଥିଲା । ଏହିଠାରେ ଆଧୁନିକ ଇଉରୋପୀୟ କ୍ଲବ୍ ଓ ପ୍ରାଚୀନ ଭାରତୀୟ ଗୋଷ୍ଠୀର ପାର୍ଥକ୍ୟ ।

ଏହି ସର୍ବସାଧାରଣ ଗୋଷ୍ଠୀମାନଙ୍କୁ ଲୋକପ୍ରିୟ ଓ ଶୃଙ୍ଖଳା-ବଦ୍ଧ କରି ଜନ-ସମାଜରେ ଏମାନଙ୍କର ଆଦର ବଢ଼ାଇବା ନିମନ୍ତେ ବାତ୍ସ୍ୟାୟନ ମଧ୍ୟ ଅନେକ କଠୋର ନିୟମମାନ ପ୍ରଣୟନ କରିଥିଲେ । ସେହି ନିୟମମାନଙ୍କ ମଧ୍ୟରୁ କେତେକ ନିମ୍ନରେ ପ୍ରଦତ୍ତ ହେଲା :—

୧ । ଶାସ୍ତ୍ରଚର୍ଚ୍ଚା ଓ ନିର୍ଦ୍ଦୋଷ ଆମୋଦପ୍ରମୋଦର ବ୍ୟବସ୍ଥା କରି ସଭ୍ୟମାନଙ୍କର ଚିତ୍ତକୁ ଶୁଦ୍ଧ ରଖିବା ଏବଂ ସେମାନଙ୍କର ମନ ବିନୋଦନ କରିବା ପ୍ରତ୍ୟେକ ଗୋଷ୍ଠୀର କର୍ତ୍ତବ୍ୟ ।

୨ । ଯେଉଁ ସଭ୍ୟ ଅତି କଠିନ ଶବ୍ଦ ସଂଯୁକ୍ତ ସଂସ୍କୃତଭାଷା (ନାତ୍ୟନ୍ତ ସଂସ୍କୃତୈଃ) କିମ୍ବା ଅତ୍ୟନ୍ତ ଗ୍ରାମ୍ୟ କିମ୍ବା ଅଶ୍ଳୀଳଭାଷାରେ ଗୋଷ୍ଠୀରେ ଆଳାପ ନ କରେ ସେ ଲୋକପ୍ରିୟ ହୁଏ ।

୩ । ଯେଉଁ ଗୋଷ୍ଠୀ ଲୋକଙ୍କର ଅପ୍ରିୟ (ଲୋକବିଦ୍ୱିଷ୍ଟା), ଯାହା ଶୃଙ୍ଖଳା କିମ୍ବା ନିୟମରେ ଗୃହୀତ ନୁହେଁ ଏବଂ ଯେଉଁ ଗୋଷ୍ଠୀ ଅନ୍ୟ ଗୋଷ୍ଠୀମାନଙ୍କୁ ହିଂସା-ଚକ୍ଷୁରେ (ହିଂସାତ୍ମିକା) ଦେଖେ, ସେହି ଗୋଷ୍ଠୀ ଜ୍ଞାନୀ ଲୋକମାନଙ୍କଦ୍ୱାରା ପରିବର୍ଜ୍ଜନୀୟ ।

ଜ୍ଞାନୀ ଲୋକମାନେ ଏହି ଗୋଷ୍ଠୀରେ ଯୋଗଦାନ କରି ସିଦ୍ଧିପ୍ରାପ୍ତ ହୁଅନ୍ତି । ସେମାନଙ୍କର ବାସନା ପୂର୍ଣ୍ଣ ହୁଏ । ଏହି ଗୋଷ୍ଠୀରେ ସେମାନେ ନିର୍ଦ୍ଦୋଷ ଓ ନିରାଡ଼ମ୍ବର ଆମୋଦପ୍ରମୋଦଦ୍ୱାରା ଆନନ୍ଦ ଉପଭୋଗ କରିବାର ସୁବିଧା ପାଆନ୍ତି ।

ଏଥିରୁ ନିଃସନ୍ଦେହ ଭାବରେ ପ୍ରମାଣିତ ହୁଏ ଯେ ଗୋଷ୍ଠୀ ସେକାଳର ଲୋକମାନଙ୍କର ବଡ଼ ଆଦରର ସାମଗ୍ରୀ ଥିଲା । ଗୋଷ୍ଠୀ ନ ଥାଇ ଗ୍ରାମ କିମ୍ବା ସହର ନ ଥିଲା । ପ୍ରତ୍ୟେକ ଯୁବକ ଗୋଷ୍ଠୀର ସଭ୍ୟ ହେବାକୁ ବାଧ୍ୟ ହେଉଥିଲେ ।

ସେକାଳର ଗୋଷ୍ଠୀ ଜନ-ସମାଜରେ ଏତେଦୂର ଆଦରଣୀୟ ହୋଇଥିଲା ଯେ ସଭ୍ୟମାନଙ୍କର ଚିତ୍ତବିନୋଦନ ନିମନ୍ତେ ଅଭିନୀତ ହେଉଥିବା ଏକାଙ୍କ ନାଟକମାନଙ୍କୁ 'ଗୋଷ୍ଠୀ' ଆଖ୍ୟା ଦିଆଯାଇଥିଲା * । ଏହି ଗୋଷ୍ଠୀମାନଙ୍କରେ ମଧୁର ଶିଳ୍ପଚର୍ଚ୍ଚା କରା

* ସାହିତ୍ୟ-ଦର୍ପଣ, Part I, Chap. IV, Sec, 19

ବହୁ ଯେ ସହୃଦୟମାନଙ୍କର ମନୋହରଣ କରି ପାରୁଥିଲା ଗୋଷ୍ଠୀରେ ତାର ଆଦର ବେଶୀ ହେଉଥିଲା । ସାହିତ୍ୟଦର୍ପଣକାର ବିଶ୍ୱନାଥ ମଧ୍ୟ 'ବିଟ' ବୋଲି ଜଣେ ଲୋକର ସଂଜ୍ଞା ନିର୍ଦ୍ଦେଶ କରିଅଛନ୍ତି । 'ବେଶୋପଚାରକୁଶଳଃ, ବାଗ୍ମୀ, ମଧୁରୋଽଥ ବହୁମତୋ ଗୋଷ୍ଠ୍ୟାଂ'* ଯେଉଁ ଲୋକ ବେଶ କରିବାର ସରଞ୍ଜାମ ଭଲକରି ଜାଣେ, ବାଗ୍ମୀ, ଅଥଚ ପ୍ରକୃତି ମଧୁର, ସେହି ଲୋକର ଆଦର ଗୋଷ୍ଠୀରେ ବେଶୀ । ସାହିତ୍ୟଦର୍ପଣକାର ବିଶ୍ୱନାଥଙ୍କର 'ବିଟ' ଶବ୍ଦର ତାତ୍ପର୍ଯ୍ୟ ଯାହାହେଉ ପଛେ, ଅନ୍ତତଃ କବି ବିଶ୍ୱନାଥଙ୍କ ସମୟରେ ଯେ ପ୍ରାଚୀନ ଭାରତରେ ଗୋଷ୍ଠୀର ଆଦର ଥିଲା ଏବଂ ଗୋଷ୍ଠୀ ଯେ ସେତେବେଳକୁ ଜନ-ସମାଜରେ ବଡ଼ ଆଦରର ଅନୁଷ୍ଠାନ ହୋଇ ସାରିଥିଲା ଏଥିରେ ସନ୍ଦେହ କରିବାର କୌଣସି କାରଣ ନାହିଁ । ସାହିତ୍ୟଦର୍ପଣକାର ବିଶ୍ୱନାଥଙ୍କୁ କେହି କେହି ଖ୍ରୀଷ୍ଟ ସପ୍ତମ ଶତାବ୍ଦୀର ଲୋକ ବୋଲି କହନ୍ତି । ତେବେ ଖ୍ରୀଷ୍ଟ ସପ୍ତମ ଶତାବ୍ଦୀର ବହୁପୂର୍ବରୁ ଯେ ଭାରତରେ ଗୋଷ୍ଠୀ ଅନୁଷ୍ଠାନମାନ ବିଦ୍ୟମାନ ଥିଲା, ଏହା ଦୃଢ଼ତାର ସହିତ କୁହାଯାଇ ପାରେ । କାମସୂତ୍ରକାର ବାତ୍ସ୍ୟାୟନ ମହର୍ଷିଙ୍କ ଲେଖାରୁ ଆମ୍ଭେମାନେ ପ୍ରାଚୀନ ଭାରତର ଗୋଷ୍ଠୀ ସମ୍ବନ୍ଧରେ ଅନେକ ତଥ୍ୟ ପାଉଁ । ବର୍ତ୍ତମାନ ପ୍ରଶ୍ନ ଉଠିପାରେ ଏହି ବାତ୍ସ୍ୟାୟନ କେଉଁ ସମୟର ଲୋକ ? କେହି କେହି ଐତିହାସିକ ଏହାଙ୍କୁ ମୌର୍ଯ୍ୟସମ୍ରାଟ ଚନ୍ଦ୍ରଗୁପ୍ତଙ୍କର ପ୍ରଧାନ ମନ୍ତ୍ରୀ ଚାଣକ୍ୟଙ୍କ ବ୍ୟତୀତ ଆଉ କେହି ନୁହନ୍ତି ବୋଲି ମତ ଦିଅନ୍ତି । ସେ ଯାହାହେଉ 'କାମସୂତ୍ର' ଯେ ପ୍ରାଚୀନ ଗ୍ରନ୍ଥ ଏ ବିଷୟରେ କାହାର ମତଦ୍ୱୈଧ

---

* J. B. and O. R. S. vol III - part III, p 414
"ବିଟ"

ନାହିଁ । ସୁତରାଂ ଗୋଷ୍ଠୀଜୀବନ ଯେ ଭାରତର ଗୋଟିଏ ଅତି ପ୍ରାଚୀନ ସାମାଜିକ ଅନୁଷ୍ଠାନ ଏହା ଇତିହାସର କଠୋର ସତ୍ୟ ।

ଅତଏବ ଆଧୁନିକ ଯୁଗରେ ଆମ୍ଭେମାନେ ସେହି ଗୋଷ୍ଠୀ କିମ୍ବା ପ୍ରାଚୀନ କ୍ଲବମାନଙ୍କର ସତ୍ତା ସୁଦ୍ଧା ଦେଖିବାକୁ ପାଉନାହୁଁ । ପ୍ରାଚୀନ ଭାରତର ଅନ୍ୟାନ୍ୟ ହିତକର ଅନୁଷ୍ଠାନମାନଙ୍କ ପରି ଏହି ଗୋଷ୍ଠୀ-ମାନଙ୍କର ଧ୍ୱଂସ କିପରି ହେଲା ତାହା ନିରୂପଣ କରିବା ସାଧ୍ୟାତୀତ । ମୁସଲମାନ ରାଜାମାନେ ହିନ୍ଦୁମାନଙ୍କର ବିଦ୍ରୋହକୁ ବଡ଼ ଭୟ କରୁ-ଥିଲେ । ଗୋଷ୍ଠୀରେ ସମବେତ ହେଉଥିବା ଯୁବକମାନେ କାଳେ କେତେବେଳେ ଏହି ବିଦ୍ରୋହ ବହ୍ନି ଜାଳି ଦେଇପାରନ୍ତି, ଏହି ଭୟରେ ପ୍ରଜାପୀଡ଼କ ହିନ୍ଦୁଧର୍ମବିଦ୍ୱେଷୀ ମୁସଲମାନ ରାଜାମାନେ ଏହି ଗୋଷ୍ଠୀମାନଙ୍କର ଧ୍ୱଂସ ସାଧନ କରିଥିବା ସହଜରେ ଅନୁମେୟ । ଅଲ୍ଲାଉଦ୍ଦିନ୍ ଖିଲିଜି ଏହିପରି ଅନେକ ଗୋଷ୍ଠୀ ଧ୍ୱଂସ କରିଥିବାର ପ୍ରମାଣ ଇତିହାସରୁ ମିଳେ । ଏହି ସାଧାରଣ ଗୋଷ୍ଠୀଘରୁ ବିନଷ୍ଟ ହେବାରୁ ଧନୀ ଲୋକମାନେ ନିଜ ନିଜ ଘରେ ଗୋପନରେ ଗୀତ ବାଦ୍ୟ ଓ ଆମୋଦ ପ୍ରମୋଦ କରିବାକୁ ଆରମ୍ଭ କଲେ । ସେହି ଘରମାନଙ୍କୁ ବୈଦେଶିକ ଭାଷାରେ 'ଅଡ୍ଡା' ବୋଲି କାଳକ୍ରମେ କୁହାଗଲା । ଏବେ ପ୍ରାଚୀନ ଗୋଷ୍ଠୀମାନଙ୍କର ଜ୍ୱଳନ୍ତ ନିଦର୍ଶନ ଓ ସ୍ମୃତି-ଚିହ୍ନସ୍ୱରୂପ ଆଜିକାଲି ଓଡ଼ିଶାର ଗ୍ରାମେ ଗ୍ରାମେ ଯେଉଁ 'ଭାଗବତ-ଘର' କିମ୍ବା 'ଭାଗବତ-ଟୁଙ୍ଗୀ'ର ପ୍ରାଚୁର୍ଯ୍ୟ ଦେଖାଯାଏ, ତାହାର ସୃଷ୍ଟି କେବେ ହେଲା ଠିକ୍‌କରି କୁହାଯାଇ ନ ପାରିଲେ ସୁଦ୍ଧା ଏମାନେ ଯେ ପ୍ରାଚୀନ ଗୋଷ୍ଠୀର ରୂପାନ୍ତର ଏହା ସହଜରେ ଅନୁମେୟ । ଆଧୁନିକଯୁଗର କ୍ଲବମାନେ ବୈଦ୍ୟୁତିକ ଆଲୋକରେ ଉଦ୍ଭାସିତ, ନାନାପ୍ରକାର ବୈଦେଶିକ ସାଜସଜ୍ଜାରେ ଅଲଂକୃତ, କେତେ ଯେ ବୈଦେଶିକ କ୍ରୀଡ଼ା ଓ କୌତୁକର ଆବିର୍ଭାବ

ଏହା କ୍ଲବମାନଙ୍କରେ ଦେଖୁଅଛୁ, ତାହାର ଉପଯୁକ୍ତ ନାହିଁ । କିନ୍ତୁ ଏ ସମସ୍ତ ବିଶାଳ ବୈଷମ୍ୟ ସତ୍ତ୍ୱେ ଆଧୁନିକ କ୍ଲବ ଓ ପ୍ରାଚୀନ ଗୋଷ୍ଠୀମାନଙ୍କର ଉଦ୍ଦେଶ୍ୟ ଓ ଲକ୍ଷ୍ୟ ଯେ ଏକ ଥିଲା ଏଥିରେ ସନ୍ଦେହ କରିବାର କୌଣସି କାରଣ ନାହିଁ ।



## ସୂତାକଟାରେ ମୌର୍ଯ୍ୟ ସାମ୍ରାଜ୍ୟର ନାଶ *

ଏବେ କେତେ ବର୍ଷ ଧରି ସୂତାକଟା କିମ୍ବା ଚରଖା ଆନ୍ଦୋଳନ ଭାରତର ସବୁ ପ୍ରଦେଶରେ ପରିବ୍ୟାପ୍ତ ହୋଇଅଛି । ଚରଖା ଓ ସୂତାକଟା ସମସ୍ୟା ନେଇ ଭାରତର ଏକ ପ୍ରାନ୍ତରୁ ଅପର ପ୍ରାନ୍ତ ପର୍ଯ୍ୟନ୍ତ ନାନାପ୍ରକାର ଆନ୍ଦୋଳନ ଓ ଆଲୋଚନା ଚାଲିଅଛି । ଭାରତର ଲକ୍ଷ ଲକ୍ଷ ନିରନ୍ନ ଲୋକଙ୍କୁ ସ୍ୱାବଲମ୍ବନଶୀଳ କରାଇ ସେମାନଙ୍କ ନିମନ୍ତେ ଉଦରପୂର୍ତ୍ତି ପାଇଁ ଏକମୁଷ୍ଟି ଅନ୍ନର ସଂସ୍ଥାନ କରାଇବା ଏହି ଭାରତ-ବ୍ୟାପୀ ଚରଖା-ଆନ୍ଦୋଳନର ଉଦ୍ଦେଶ୍ୟ । ପ୍ରାଚୀନ ଭାରତରେ ଶିଳ୍ପ ଓ ବାଣିଜ୍ୟ ଉନ୍ନତିର ଚରମ-ସୀମାରେ ଉପନୀତ ହୋଇଥିଲା । ନାନା ଅନିବାର୍ଯ୍ୟ କାରଣବଶତଃ ଭାରତର କୁଟୀର-ଶିଳ୍ପ ସବୁ ଧ୍ୱଂସ ପାଇବାରୁ ଏ ଦେଶର କୋଟି କୋଟି ଲୋକ ଆଜି ନିଃସହାୟ, ବୁଭୁକ୍ଷୁ ଓ ଦାରିଦ୍ର୍ୟପୀଡ଼ିତ । ବସ୍ତ୍ର-ବୟନ-ପଟୁ ପଲ୍ଲୀର ତନ୍ତୀ ଆଜି କୁଲିଗିରି କରି ପେଟ ପୋଷେ । ଏହି ଆର୍ଥିକ ଦୁର୍ଗତିରୁ ଭାରତକୁ ରକ୍ଷା କରିବା ନିମନ୍ତେ ଚରଖା ଆନ୍ଦୋଳନର ସୂତ୍ରପାତ । ଆଜି ସେ ସାମାନ୍ୟ ଚର୍ଖିଏ ସାଗର-ବେଷ୍ଟିତ

* ୧୩ଶ ଭାଗ, ଜ୍ୟେଷ୍ଠ, ୧୩୩୯ 'ସହକାର'ରେ ପ୍ରକାଶିତ ଲେଖକର ପ୍ରବନ୍ଧରୁ ସାମାନ୍ୟ ପରିବର୍ତ୍ତନସହ ଗୃହୀତ ।

ଦ୍ୱୀପ ଜାପାନ ପୃଥିବୀର ଏକ ସର୍ବଶ୍ରେଷ୍ଠ ଶକ୍ତିଶାଳୀ ଜାତିରୂପେ ମୁଣ୍ଡ ଟେକି ଛିଡ଼ା ହୋଇଅଛି, ତାହାର ମୂଳରେ ଅଛି ଜାପାନର ବାଣିଜ୍ୟ ଓ ଶିଳ୍ପର ଅଭ୍ୟୁତ୍ଥାନ ଓ ପ୍ରସାର ।

ଖାଦ୍ୟକୁ ଛାଡ଼ିଦେଲେ ବସ୍ତ୍ର ମନୁଷ୍ୟର ନିତାନ୍ତ ଅପରିହାର୍ଯ୍ୟ ଓ ଆବଶ୍ୟକୀୟ ପଦାର୍ଥ । ଏହି ବସ୍ତ୍ର ବ୍ୟବସାୟରେ ଇଂଲଣ୍ଡଦେଶ ଆଜି ସମୃଦ୍ଧିଶାଳୀ, ଜାପାନ ଦ୍ୱୀପ ଆଜି ଶକ୍ତିଶାଳୀ । ସୁତରାଂ ଭାରତର ପ୍ରତ୍ୟେକ ଲୋକକୁ ନିଜ ହାତରେ ସୂତା କାଟିବାକୁ ହେବ । ଏହାଦ୍ୱାରା ପ୍ରତ୍ୟେକ ଗୃହସ୍ଥ ଅନେକ ଅନାବଶ୍ୟକ ଖର୍ଚ୍ଚରୁ ରକ୍ଷା ପାଇବ ଏବଂ ଗ୍ରାମର ଦରିଦ୍ର ମଧ୍ୟ କାର୍ଯ୍ୟ ପାଇବ । ଦେଶର ଟଙ୍କା ଦେଶରେ ରହିବ । ଭାରତର ବର୍ତ୍ତମାନ ଦୁଇଟି ଜଟିଳ ସମସ୍ୟା:—

୧ । ଭାରତର ଦାରିଦ୍ର୍ୟର ମୂଳ ଉତ୍ପାଟନ ।

୨ । ଭାରତବାସୀର ଅନୁଦ୍ୟୋଗ-ସମସ୍ୟାର ଯଥାଯଥ ସମାଧାନ ।

ଏହି ଦୁଇଟି ଗୁରୁତର ପ୍ରଶ୍ନର ମୀମାଂସା ଚରଖା-ଆନ୍ଦୋଳନର ଉଦ୍ଦେଶ୍ୟ । ଜଣେ ବିଶିଷ୍ଟ ଭାରତୀୟ ନେତା ଏହି ସମ୍ପର୍କରେ ଥରେ କହିଥିଲେ, "ସରକାର ଯେପରି ନିଜ ତତ୍ତ୍ୱାବଧାନରେ କେତେ ଗୋଟି ନୂତନ ନୂତନ ଶିଳ୍ପ ଓ ବାଣିଜ୍ୟ-ବିଭାଗ ସୃଷ୍ଟି କରି ମଧ୍ୟବିତ୍ତ ଓ ଶ୍ରମଜୀବୀ ଦରିଦ୍ର ଲୋକମାନଙ୍କର ଅନୁଦ୍ୟୋଗ-ସମସ୍ୟାର ପୂରଣରେ ଯତ୍ନବାନ ହୁଅନ୍ତି ତାହାର ବହୁତ ପ୍ରତିକାର ଅବଲମ୍ବନ କରନ୍ତୁ । ତାହା ନ ହେଲେ ଭାରତର ଏ ଆର୍ଥିକ ଦୁର୍ଗତି—ଏ ଦାରୁଣ ଦାରିଦ୍ର୍ୟ ଦୂରୀଭୂତ ହେବ ନାହିଁ ।"

କିନ୍ତୁ ପ୍ରାଚୀନ ଭାରତରେ ଅର୍ଥନୈତିକ ଦୁର୍ଗତି ଭୟଙ୍କର ନ ଥିଲେ ସୁଦ୍ଧା ସେ କାଳର ହିନ୍ଦୁରାଜାମାନେ ଅନେକଗୁଡ଼ିଏ ଶିଳ୍ପ ଓ

ବାଣିଜ୍ୟ ରାଜସରକାରଙ୍କର ଅଧୀନରେ ରଖୁଥିଲେ । କୌଶଳନିର୍ମାଣ, ଖଣି, ହସ୍ତିବନ ଓ ଅନ୍ୟର ନାନାବିଧ ବିଭାଗର ଉତ୍ପନ୍ନ ଦ୍ରବ୍ୟାଦିଦ୍ୱାରା ପ୍ରସ୍ତୁତ ପଣ୍ୟଦ୍ରବ୍ୟର କାରବାର ମଧ୍ୟ ରାଜାଙ୍କର ଏକଚେଟିଆ ଅଧିକାରରେ ଥିଲା । ରାଜହସ୍ତରେ ନ୍ୟସ୍ତ ଏହି ପ୍ରକାର 'ଏକଚେଟିଆ' ବ୍ୟବସାୟଦ୍ୱାରା ପ୍ରଜାମାନଙ୍କର କି କଲ୍ୟାଣ ସାଧିତ ହେଉଥିଲା ତାହା ବୁଝାଇ କହିବା ନିଷ୍ପ୍ରୟୋଜନ । ରାଜକୀୟ କାରଖାନାରେ ଅନେକ ଲୋକ କର୍ମଚାରୀରୂପେ ନିଯୁକ୍ତ ହୋଇ ଜୀବିକା ଅର୍ଜନ କରୁଥିଲେ । ବସ୍ତ୍ର-ବୟନ ଓ ସୂତା-କର୍ତ୍ତନ ଏହି ଉଭୟ-ବିଧ ଶିଳ୍ପ ଯେ କେବଳ ଗୃହସ୍ଥଗଣ ସର୍ବଦା ନିଜ ନିଜ ତତ୍ତ୍ୱାବଧାନରେ ସ୍ୱାଧୀନ ଭାବରେ ସମ୍ପାଦନ କରୁଥିଲେ ତାହା ନୁହେଁ; ଅନେକ ଲୋକ, ବିଶେଷତଃ ସ୍ତ୍ରୀ ଲୋକମାନେ ରାଜକୀୟ 'ସୂତା-ବିଭାଗ'ରେ କାର୍ଯ୍ୟ କରି ଜୀବନଯାତ୍ରା ନିର୍ବାହ କରୁଥିଲେ ।

ଏହି ସମ୍ବନ୍ଧରେ ପ୍ରାୟ ଅଢ଼େଇ ହଜାର ବର୍ଷ ପୂର୍ବର ଗୋଟିଏ ରାଜକୀୟ-ବ୍ୟବସ୍ଥାର ଉଲ୍ଲେଖ କରାଯାଉଅଛି । ଏ ପ୍ରାୟ ମୌର୍ଯ୍ୟ-ବଂଶୀୟ ସମ୍ରାଟମାନଙ୍କର ରାଜତ୍ୱ କାଳର କଥା । ବିଶେଷତଃ ପ୍ରଥିତ-ଯଶା ପ୍ରବଳପରାକ୍ରାନ୍ତ ମୌର୍ଯ୍ୟ-ସମ୍ରାଟ ଚନ୍ଦ୍ରଗୁପ୍ତଙ୍କର ଚତୁର ଓ ବୁଦ୍ଧିମାନ ବ୍ରାହ୍ମଣମନ୍ତ୍ରୀ ଚାଣକ୍ୟ ବା କୌଟିଲ୍ୟଙ୍କ ପ୍ରଣୀତ 'ଅର୍ଥ-ଶାସ୍ତ୍ର'ରୁ ଆମ୍ଭେମାନେ ମୌର୍ଯ୍ୟ-ସାମ୍ରାଜ୍ୟର ଶାସନ-ପଦ୍ଧତି, ଅର୍ଥ-ନୀତି, ବାଣିଜ୍ୟ-ବ୍ୟବସାୟ ଓ ଲୋକମାନଙ୍କର ଆଚାର-ବ୍ୟବହାର ସମ୍ବନ୍ଧରେ ଅନେକ ତଥ୍ୟ ପାଉଁ । ଚନ୍ଦ୍ରଗୁପ୍ତ ନିଜର ବିଶାଳ ସାମ୍ରାଜ୍ୟର ସୁଶାସନ ନିମନ୍ତେ ଅନେକ ପ୍ରକାର ବିଭାଗ ଓ ଶ୍ରେଣୀର ସୃଷ୍ଟି କରିଥିଲେ । ଚାଣକ୍ୟପ୍ରଣୀତ ସମସାମୟିକ 'ଅର୍ଥଶାସ୍ତ୍ର'

ଏହାର ଜ୍ୱଳନ୍ତ ପ୍ରମାଣ (୧)। ଏ ସକଳ ବିଭାଗ ମଧ୍ୟରେ 'ଗୁପ୍ତଚର' ବିଭାଗ ପ୍ରଧାନ ଥିଲା।

ଗୁପ୍ତଚରରେ ପୁରୁଷ ଅପେକ୍ଷା ସ୍ତ୍ରୀଲୋକମାନଙ୍କର ନିପୁଣତା ଅଧିକ ଏହା ବିଶ୍ୱାସଯୋଗ୍ୟ କଥା। ପୁରୁଷ ସ୍ୱଭାବତଃ ଟିକିଏ ଅସ୍ଥିରଚିତ୍ତ—ସ୍ତ୍ରୀଲୋକମାନଙ୍କର ମନୋନିବେଶ, ଧୈର୍ଯ୍ୟ ଓ ଶାନ୍ତଚିତ୍ତତା, ଗୁପ୍ତଚର-ଶିଳ୍ପରେ ସେମାନଙ୍କର ନୈପୁଣ୍ୟର କାରଣ ବୋଲି ମନେ ହୁଏ। ଏଥିପାଇଁ ଏହି କାର୍ଯ୍ୟରେ ରାଜାମାନଙ୍କୁ ସୂତ୍ର-ବିଭାଗରେ ସ୍ତ୍ରୀଲୋକମାନଙ୍କର ସହାୟତା ନେବାକୁ ପଡ଼ୁଥିଲା (୨)। ମୌର୍ଯ୍ୟ ଯୁଗର ମହାମନ୍ତ୍ରୀ ସୂକ୍ଷ୍ମଧୀ କୌଟିଲ୍ୟ ତାହାଙ୍କ 'ଅର୍ଥଶାସ୍ତ୍ରର' 'ଅଧ୍ୟକ୍ଷ-ପ୍ରଚାର-ଅଧିକରଣ' ରେ ସୂତ୍ରାଧ୍ୟକ୍ଷର କର୍ତ୍ତବ୍ୟ ସମ୍ପର୍କରେ ଗୋଟିଏ ସ୍ଥାନରେ ଲେଖିଅଛନ୍ତି—

"ଉର୍ଣ୍ଣା-ବଲ୍କ-କାର୍ପାସ-ତୁଳ-ଶଣ-କ୍ଷୌମାଣି ଚ
ବିଧବା-ନ୍ୟଙ୍ଗାକନ୍ୟା-ପ୍ରବ୍ରଜିତା-ଦଣ୍ଡପ୍ରତିକାରିଣୀଭିଃ
ରୂପାଜୀବାମାତୃକାଭିଃ-ବୃଦ୍ଧ-ରାଜଦାସୀଭି...
ଦେବଦାସୀଭିଶ୍ଚ କର୍ତ୍ତୟେତ୍ (୩)।"

---

(୧) "The researches of German scholars have established beyond doubt the fact that the treatise entitled Arthasastra, or the science of Polity, is an authentic composition of Maurya Age"—The Early History of India—V. A. Smith, p. 137.

(୨) ୨୪ ଭାଗ 'ପ୍ରବାସୀ'ର ପ୍ରଥମ ସଂଖ୍ୟା ଦ୍ରଷ୍ଟବ୍ୟ

(୩) ଅର୍ଥଶାସ୍ତ୍ର "ଅଧ୍ୟକ୍ଷ-ପ୍ରଚାର-ଅଧିକରଣ"

ଊର୍ଣ୍ଣା (ମେଷଲୋମଜାତସୂତ୍ର), ବଳ୍କ (ମୂର୍ବାଦତ୍ତ୍ୱ), କାର୍ପାସ (ତୁଳା), ଶଣସୂତ୍ର ଓ କ୍ଷୌମ ( ରେଶମସୂତ୍ର ), ରାଜକୀୟ ସୂତ୍ରାଧ୍ୟକ୍ଷ ନିମ୍ନଲିଖିତ ସ୍ତ୍ରୀଲୋକମାନଙ୍କ ଦ୍ୱାରା କଟାଇବେ—

୧ । ବିଧବା ।

୨ । ନ୍ୟଙ୍ଗା—ବିକଳାଙ୍ଗୀ ନାରୀ ।

୩ । କନ୍ୟା—ଅବିବାହିତା ବାଳିକା ।

୪ । ପ୍ରବ୍ରଜିତା—ସଂସାର ପରିତ୍ୟାଗିନୀ ସନ୍ନ୍ୟାସିନୀ ।

୫ । ଦଣ୍ଡପ୍ରତିକାରିଣୀ—ଯେଉଁ ନାରୀ ଦୈହିକ କାର୍ଯ୍ୟଦ୍ୱାରା ନିଜ ଉପରେ ବିହିତ ରାଜଦଣ୍ଡର ଶୋଧ କରିଥାନ୍ତି ।

୬ । ରୂପାଜୀବା—ବେଶ୍ୟା ।

୭ । ବୃଦ୍ଧା ରାଜଦାସୀ ।

୮ । ଯେଉଁ ସମସ୍ତ ଦେବଦାସୀ ବାର୍ଦ୍ଧକ୍ୟହେତୁ ଦେବାଳୟର ପରିଚର୍ଯ୍ୟା କାର୍ଯ୍ୟ ଆଉ ଚଳାଇପାରନ୍ତି ନାହିଁ ।

ଏହି ପ୍ରକାର ସ୍ତ୍ରୀଲୋକମାନେ ସୂତ୍ରାଧ୍ୟକ୍ଷ ବିଭାଗରେ ସୂତ୍ରାଧ୍ୟକ୍ଷ ଦ୍ୱାରା ନିଯୁକ୍ତ ହୁଅନ୍ତି । କୌଟିଲ୍ୟଙ୍କର ଏହି ଉଦ୍ଧୃତବାକ୍ୟରୁ ଜଣାଯାଏ, ରାଜକୀୟ ସୂତ୍ର-ବିଭାଗରେ ଗୃହସ୍ଥ ଘରର ବିଧବା ଓ ଅବିବାହିତା କନ୍ୟା ଯେପରି କାର୍ଯ୍ୟ କରିପାରନ୍ତି ସେହିପରି ସଂସାର ପରିତ୍ୟାଗ କରିଥିବା ପ୍ରବ୍ରଜ୍ୟା ନାରୀମାନେ ମଧ୍ୟ ନିଯୁକ୍ତ ହୋଇପାରନ୍ତି । ପୁଣି ଯେଉଁ ରାଜଦଣ୍ଡରେ ଦଣ୍ଡିତା ରମଣୀ ରାଜଦତ୍ତ ଅର୍ଥଦଣ୍ଡର ମୂଲ୍ୟ ଦେବାକୁ ଅସମର୍ଥ ହୋଇ, ତାହା ପରିବର୍ତ୍ତରେ ନାନାପ୍ରକାର ସୂତା କାଟି ତାହା ପରିଶୋଧ କରେ, ସେହିପରି ବେଶ୍ୟା, ରାଜଦାସୀ ଓ ଦେବଦାସୀମାନେ ଏହି ରାଜକୀୟ ସୂତ୍ର ବିଭାଗରେ ନିଯୁକ୍ତ ହୋଇ ଅର୍ଥ ଉପାର୍ଜ୍ଜନ କରିପାରନ୍ତି । ସମାଜର ପ୍ରତ୍ୟେକ ସ୍ତରର ଲୋକପ୍ରତି

ଏହିପରି ସମାନ ଓ ସୂକ୍ଷ୍ମ ଦୃଷ୍ଟି ଥିଲେ ଦେଶରେ ସମୂହ କଲ୍ୟାଣ ସାଧିତ ହେବା ଯଥେଷ୍ଟ ସମ୍ଭବପର ।

ସୂତ୍ରକର୍ତ୍ତନ ଶିଳ୍ପରେ ଏହିପରି ନାନା ଶ୍ରେଣୀର ସ୍ତ୍ରୀଲୋକ, କିଏ କିପରି ସୂକ୍ଷ୍ମ, ସ୍ଥୂଳ ବା ମଧ୍ୟମପ୍ରକାର ସୂତା କାଟି ପାରେ, ଏବଂ କିଏ ପ୍ରତିଦିନ କେତେ ପରିମାଣରେ ସୂତା କାଟିପାରେ, ତାହା ପରୀକ୍ଷା କରି ସୂତ୍ରାଧ୍ୟକ୍ଷକୁ ସେମାନଙ୍କର ବେତନ ନିର୍ଦ୍ଦେଶ କରିବାକୁ ହୁଏ । ଦୂରକାରିଣୀ ନାରୀମାନଙ୍କର ଚକ୍ଷୁ ଓ ମସ୍ତିଷ୍କ ଶୀତଳ ଥିଲେ ସେମାନେ ଉତ୍କୃଷ୍ଟ ସୂତ୍ର କର୍ତ୍ତନ କରିପାରନ୍ତି—ଏହି ଅଭିପ୍ରାୟରେ ରାଜ-ସରକାରରୁ ସେମାନଙ୍କର ବ୍ୟବହାର ନିମିତ୍ତ ତେଲ ଓ ଆମଲକୀ ବିତରଣ କରାଯାଏ । ତିଥିଦିବସ ଅର୍ଥାତ୍ ପର୍ବଦିବସମାନଙ୍କରେ ଅତିରିକ୍ତ ଅଶନ (ଭୋଜି) ଓ ଦାନ ପ୍ରଭୃତିର ଆୟୋଜନ କରି କର୍ତ୍ତନକାରୀମାନଙ୍କୁ ଉତ୍ସାହିତ କରାଯାଏ । ସୂତା ନିର୍ଦ୍ଦିଷ୍ଟ ପରିମାଣରୁ ଊଣା ହେଲେ ତାହାର ମୂଲ୍ୟ ଅନୁସାରେ ସ୍ତ୍ରୀଲୋକମାନଙ୍କର ବେତନର ପରିମାଣ କମାଇ ଦିଆଯାଇ ପାରେ ।

ଏଠାରେ ଅତି ପ୍ରାଚୀନକାଳର ଅଦ୍ଭୁତ ଗୋଟିଏ ବ୍ୟବସ୍ଥାର କଥା ଉଲ୍ଲେଖ କରିବା ଆବଶ୍ୟକ । ଉପର୍ଯ୍ୟୁକ୍ତ ନାରୀମାନେ ରାଜକୀୟ ସୂତ୍ରବିଭାଗର ସୂତ୍ରଶାଳାରେ ସ୍ୱୟଂ ଉପସ୍ଥିତ ହୋଇ କାର୍ଯ୍ୟ କରିପାରନ୍ତି । କିନ୍ତୁ ଯେଉଁ ରମଣୀମାନେ ଘରୁ ବାହାରକୁ ଯିବାକୁ ଇଚ୍ଛା କରନ୍ତି ନାହିଁ ଅଥଚ ନିଜ ପରିଶ୍ରମାର୍ଜ୍ଜିତ ଅର୍ଥଦ୍ୱାରା ଗ୍ରାସାଚ୍ଛାଦନର ଉପାୟ କରି ଜୀବନ-ଯାତ୍ରା ନିର୍ବାହ କରିବାକୁ ଇଚ୍ଛା କରନ୍ତି, ସେମାନଙ୍କ ନିମନ୍ତେ ଅନ୍ୟପ୍ରକାର ରାଜକୀୟ ବ୍ୟବସ୍ଥା ଥିଲା । ଏହି ଶ୍ରେଣୀର ଅସୂର୍ଯ୍ୟଂପଶ୍ୟା ନାରୀମାନେ ନିଜ ନିଜର ଦାସୀଦ୍ୱାରା ସୂତାକଟାର ବନ୍ଦୋବସ୍ତ କରିନିଅନ୍ତି । ସେଥିପାଇଁ କୌଟିଲ୍ୟ ଲେଖିଅଛନ୍ତି—

"ଯାସ୍ତ୍ୱ ନିଷ୍କାସିନ୍ୟଃ ପ୍ରୋଷିତବିଧବାଃ ନ୍ୟଙ୍ଗାଃ କନ୍ୟକାଃ ବାତ୍ମାନଂ ବିଭୃୟୁସ୍ତାଃ ସ୍ୱଦାସୀଭିରନୁସାର୍ଯ୍ୟ ସୋପଗ୍ରହଂ କର୍ମ କାରୟିତବ୍ୟାଃ ।"

ଯେଉଁ ରମଣୀଗଣ ଘରର ବାହାରକୁ ନିଷ୍କାସିତ ହୁଅନ୍ତି ନାହିଁ, ଯେଉଁମାନେ ଭର୍ତ୍ତାର ପ୍ରବାସ ଯୋଗୁଁ ବିଯୁକ୍ତସ୍ୱାମିକା, ଯେଉଁମାନେ ବିକଳାଙ୍ଗୀ, ଯେଉଁମାନେ ଅବିବାହିତା କନ୍ୟା—ସେମାନେ ଯଦି ନିଜର ପରିଶ୍ରମଦ୍ୱାରା ଜୀବିକା ଅର୍ଜ୍ଜନ କରିବାକୁ ଚାହାନ୍ତି, ତାହାହେଲେ ସୂତ୍ରାଧ୍ୟକ୍ଷ ସେମାନଙ୍କର ଦାସୀମାନଙ୍କଦ୍ୱାରା ବନ୍ଦୋବସ୍ତ କରାଇ ସେମାନଙ୍କୁ ସେମାନଙ୍କର ନିଜ ନିଜ ଘରେ ସୂତା କଟିବା ବ୍ୟାପାରରେ ନିଯୁକ୍ତ କରିପାରେ । ଆଉ ଯେଉଁସବୁ କୁଳନାରୀ ସ୍ୱୟଂ ରାଜସୂତ୍ରଶାଳାକୁ ଆସିବାକୁ ଆପତ୍ତି ନ କରନ୍ତି, ସେମାନେ ଅତି ପ୍ରତ୍ୟୁଷରେ (ସାଧାରଣ ଲୋକର କାର୍ଯ୍ୟାର୍ଥେ ବହିର୍ଗମନପୂର୍ବେ) ସୂତ୍ରଶାଳାକୁ ଆସି ନିଜ ନିଜ ଘରେ କାଟିଥିବା ସୂତସବୁ ସୂତ୍ରାଧ୍ୟକ୍ଷଠାରେ ଜମାଦେଇ ତାହା ବିନିମୟରେ ବେତନ ଗ୍ରହଣ କରିପାରନ୍ତି । ଯେଉଁ ଗୃହକୁ ଏହି କୁଳନାରୀମାନେ ସୂତା ଦାଖଲ କରିବାକୁ ଆସନ୍ତି, ସେହି ସୂତ୍ରଶାଳାରେ ଅଧ୍ୟକ୍ଷ କେବଳ 'ସୂତ୍ର ପରୀକ୍ଷା ମାତ୍ର' ପ୍ରଦୀପ ଅର୍ଥାତ୍ ଦୀପ ଯେତିକି ଜାଳିଲେ ସୂତା ପରୀକ୍ଷା କରି ଯାଇପାରେ, ସେହିପରି 'ପ୍ରକାଶଯୁକ୍ତ' ପ୍ରଦୀପ ସେଠାରେ ରଖି ପାରନ୍ତି—ଯେପରି କି ସେହି କୁଳନାରୀର ମୁଖକୁ ଆଉ କେହି ଦେଖି ନ ପାରନ୍ତି । ଯଦି ସେହି ସୂତ୍ରାଧ୍ୟକ୍ଷ ସୂତ୍ରଶାଳାକୁ ଆସିଥିବା କୁଳନାରୀମାନଙ୍କର ମୁଖକୁ ସ୍ୱୟଂ ନିରୀକ୍ଷଣ କରିବାକୁ ଚାହେଁ, ଅଥବା ସେମାନଙ୍କ ସହିତ ପ୍ରକୃତ କାର୍ଯ୍ୟକୁ ଅତିକ୍ରମ କରି ଅନ୍ୟ ବିଷୟକ ସମ୍ଭାଷଣ ଓ ଆଳାପ ପ୍ରଭୃତିରେ ପ୍ରବୃତ୍ତ ହୁଏ, ତାହାହେଲେ ସେହି ଅପରାଧରେ ତାହାକୁ କଠୋର ରାଜକୀୟ ଦଣ୍ଡରେ ଦଣ୍ଡିତ ହେବାକୁ ପଡ଼େ ।

ସେହି କୁଳନାରୀମାନଙ୍କର ସୂତ୍ରକର୍ତ୍ତନ ନିମିତ୍ତ ପ୍ରାପ୍ୟବେତନ ଦାନର କାଳ ଅତିବାହିତ ହୋଇଗଲେ ଅଥବା ସୂତାକଟାରେ ଅପାରଗ ସ୍ତ୍ରୀମାନଙ୍କଠାରୁ ଉତ୍କୋଚଲୋଭରେ ସରକାରୀ କୋଷରୁ ଗୋପନରେ ସେମାନଙ୍କୁ ଅର୍ଥ ପ୍ରଦାନ କଲେ ମଧ୍ୟ ସୂତ୍ରାଧ୍ୟକ୍ଷକୁ କଠୋର ଦଣ୍ଡ ଭୋଗ କରିବାକୁ ହୁଏ । ରାଜକୋଷରୁ ଅଗ୍ରିମ ବେତନ ନେଇ ଯେଉଁ ନାରୀମାନେ ସୂତ୍ରଶାଳାକୁ ସୂତା କାଟିବାକୁ ଯାନ୍ତି ନାହିଁ, ସେମାନଙ୍କ ପ୍ରତି ଅଙ୍ଗୁଷ୍ଠ-ସନ୍ଦଂଶ, ଅର୍ଥାତ୍ ଅଙ୍ଗୁଳିର ଅଗ୍ରଭାଗ ଛେଦନ ଦଣ୍ଡର ବ୍ୟବସ୍ଥା ଥିଲା । ସୂତ୍ର ବିକ୍ରୟ କରି ତାହାର ମୂଲ୍ୟ ଭକ୍ଷଣ, ସୂତ୍ରାପହରଣ ଓ ସରକାରୀ ସୂତ୍ର ନେଇ ପଳାୟନ, ଏହି ତିନି ଅପରାଧରେ ଧରା ପଡ଼ିଲେ ନାରୀକୁ 'ଅଙ୍ଗୁଷ୍ଠ-ସନ୍ଦଂଶ' ଦଣ୍ଡ ଭୋଗ କରିବାକୁ ପଡ଼ୁଥିଲା ।

ସେ ଯାହା ହେଉ, ଅତି ପ୍ରାଚୀନ କାଳରେ ଭାରତର ଦଣ୍ଡବିଧି, କଠୋର କି କୋମଳ ଥିଲା ସେ ବିଷୟ ଆଲୋଚନା କରିବା ଏଠାରେ ଅପ୍ରାସଙ୍ଗିକ । ଅତି ପ୍ରାଚୀନ କାଳରେ ଭାରତ-ବର୍ଷର ନାନା ଶ୍ରେଣୀର ରମଣୀମାନେ ସୂତାକଟା ବ୍ୟାପାରରେ ରାଜ-କାରଖାନାରେ କାର୍ଯ୍ୟ କରି ନିଜର ଓ ଦୁଃସ୍ଥ ପରିବାରର ଭରଣପୋଷଣରେ ଯେପରି ସହାୟତା କରୁଥିଲେ ସେହି କଥା ଆଧୁନିକ ନବ୍ୟ-ଶିତ-ସ୍ନାତା ରମଣୀମାନଙ୍କୁ ସ୍ମରଣ କରାଇଦେବା ଏହି କ୍ଷୁଦ୍ର ପ୍ରବନ୍ଧର ଉଦ୍ଦେଶ୍ୟ ।

———

## ପ୍ରାଚୀନ ଯୁଗରେ ହିନ୍ଦୁ-ବିଶ୍ୱବିଦ୍ୟାଳୟ

ଅନେକ ବୈଦେଶିକ ପଣ୍ଡିତମାନଙ୍କ ମତରେ ପ୍ରାଚୀନ ଭାରତର ସମସ୍ତ ପ୍ରକାର ଜ୍ଞାନ ଧର୍ମ୍ମ, ଦର୍ଶନ, କାବ୍ୟ, କବିତା ଓ

ସୁଷ୍ଠୁ କଳାର ମୂର୍ତ୍ତି ବିକାଶ ସତ୍ତ୍ୱେ ଭାରତୀୟମାନେ ଅସଭ୍ୟ ଓ ବର୍ବର ଥିଲେ—ଶିକ୍ଷା ଓ ସଂସ୍କୃତିର ସୀମା ପ୍ରାଚୀନ ଭାରତୀୟମାନେ ସ୍ପର୍ଶ ସୁଦ୍ଧା କରି ନ ଥିଲେ । ଏପରି ସଂପୂର୍ଣ୍ଣ ଭ୍ରମପ୍ରମାଦପୂର୍ଣ୍ଣ ଐତିହାସିକ ଭିତ୍ତିଶୂନ୍ୟ କଠୋର ମର୍ମଭେଦୀ ତୀବ୍ର ତିକ୍ତ ସମାଲୋଚନା ଯେ କେବଳ ଲେଖକମାନଙ୍କର ମୂର୍ଖତା ଓ ଅଜ୍ଞତାର ଉଜ୍ଜ୍ୱଳ ପରିଚାୟକ, ତାହା ନୁହେଁ,—ସେମାନଙ୍କର ବିଚାରଶୂନ୍ୟତା ଓ ଅଦୂରଦର୍ଶିତାର ଜ୍ୱଳନ୍ତ ନିଦର୍ଶନ । ଯେଉଁ ଐତିହାସିକମାନେ ଉନବିଂଶ ଶତାବ୍ଦୀ-ପୂର୍ବର ଭାରତ-ଇତିହାସରେ କଳଙ୍କ-କାଳିମା ଆରୋପ କରନ୍ତି, ଯେଉଁମାନେ ପ୍ରାଚୀନ ହିନ୍ଦୁମାନଙ୍କୁ 'ଅସଭ୍ୟ' ଓ 'ବର୍ବର' ଆଖ୍ୟା ଦେଇ ନିଜକୁ ଧନ୍ୟ ମନେ କରନ୍ତି—ସେମାନଙ୍କୁ ଭାରତର ସ୍ୱଦେଶୀୟ ଐତିହାସିକମାନଙ୍କ ଅଙ୍ଗୁଳି ନିର୍ଦ୍ଦେଶ କରି ଦେଖାଇ ଦେବା ଉଚିତ "ଧର୍ମ, ସଭ୍ୟତା ଓ ସଂସ୍କୃତି ସଙ୍ଗେ ସଙ୍ଗେ ପ୍ରାଚୀନ-କାଳରେ ଏହି ଭାରତ-ଭୂମିରେ ଅକ୍ସଫୋର୍ଡ ଓ କାମ୍ବ୍ରିଜ ପରି ବିସ୍ତୃତ ବିଦ୍ୟା-କେନ୍ଦ୍ର ଓ ବିଶ୍ୱବିଦ୍ୟାଳୟ ଥିଲା ।" ଆଜିକାଲି ପରି ସେହି ପ୍ରାଚୀନ ବିଶ୍ୱବିଦ୍ୟାଳୟମାନଙ୍କରେ କେବଳ ପୁସ୍ତକଗତ ବିଦ୍ୟାର ଶୁଷ୍କ ପ୍ରାଣହୀନ ଓ ନୀରସ ଆଲୋଚନା ହେଉ ନ ଥିଲା । ସେଠାରେ ନାନାପ୍ରକାର ବ୍ୟାବହାରିକ ଓ ଲୌକିକ ବିଷୟରେ ଶିକ୍ଷା ଦେବାର ସୁନ୍ଦର ବ୍ୟବସ୍ଥା ଥିଲା । ଛାତ୍ରକୁ ଉପଯୁକ୍ତ ମନୁଷ୍ୟ କରିବା ଥିଲା ପ୍ରାଚୀନ ହିନ୍ଦୁ ବିଶ୍ୱବିଦ୍ୟାଳୟର ଚରମ ଲକ୍ଷ୍ୟ । ଛାତ୍ରକୁ କେବଳ ଅର୍ଥର ଦାସତ୍ୱ କରିବାକୁ ସେହି ବିଶ୍ୱବିଦ୍ୟାଳୟ-ମାନଙ୍କର ସୃଷ୍ଟି ହୋଇ ନ ଥିଲା । ଇତିହାସ ଏହାର ସାକ୍ଷୀ । ଏପରି ସ୍ଥଳେ ଭାରତୀୟ ଲୋକମାନଙ୍କୁ ଯଦି କେହି 'ଅସଭ୍ୟ' ଓ 'ବର୍ବର' ବୋଲି କହେ, ତାହା ଯେ କେବଳ ଅବିଶ୍ୱାସ୍ୟ ତାହା ନୁହେ—ସତ୍ୟର ଭୟଙ୍କର ଅପଳାପ ମାତ୍ର । ପ୍ରାଚୀନ

ଯୁଗର ହିନ୍ଦୁମାନେ ଉଦାର, ଉଚ୍ଚ ଓ ମହନୀୟ ଆଦର୍ଶରେ ଅନୁପ୍ରାଣିତ ହୋଇଥିଲେ । ନଶ୍ବର ସଂସାରର ତୁଚ୍ଛ ମାୟାମୋହର ବନ୍ଧନରେ ସେମାନେ ରହିବାକୁ ଚେଷ୍ଟା କରୁଥିଲେ । "ଈଶ୍ବ-ହିଁ ହିନ୍ଦୁ, ସତ ରକ୍ତବିନ୍ଦୁ" ଥିଲା ପ୍ରତ୍ୟେକ ହିନ୍ଦୁ ଜୀବନର ମୂଳମନ୍ତ୍ର । ଅନେକ ପାଶ୍ଚାତ୍ୟ ଐତିହାସିକ ଜାତି ମଧ୍ୟ ଏ କଥା ମୁକ୍ତକଣ୍ଠରେ ସ୍ୱୀକାର କରିଅଛନ୍ତି । ପ୍ରାଚୀନ ଭାରତରେ ଶିକ୍ଷା ପଦ୍ଧତିରେ ସଂକୀର୍ଣ୍ଣ ଜାତିଗତ ଭେଦଭାବ ନ ଥିଲା—ଉଚ୍ଚ ନୀଚର ବିଗ୍ରହ ନ ଥିଲା—ଧନୀ ଦରିଦ୍ରର ଅଭେଦ୍ୟ ପାର୍ଥକ୍ୟ ନ ଥିଲା । ବିଶ୍ୱବିଦ୍ୟାଳୟ ମଧ୍ୟରେ ସମସ୍ତେ ସମାନ । ସମସ୍ତଙ୍କର ସମାନ ଆଦର । ଠଗମାନଙ୍କର କଣ୍ଟକ କର୍ଣ୍ଣେଲ ସ୍ଲିମାନ୍ ସାହେବ ସେତେବେଳର ଭାରତୀୟମାନଙ୍କୁ ଲକ୍ଷ୍ୟ କରି କହିଥିଲେ—"ମୋ ଚକ୍ଷୁ ସମ୍ମୁଖରେ ଏପରି ସହସ୍ର ସହସ୍ର ଘଟଣା ଘଟିଯାଇଅଛି—ଯେଉଁଥିରେ ଗୋଟିଏ ଗୋଟିଏ ମନୁଷ୍ୟର ସମ୍ପଦ, ସ୍ୱାଧୀନତା ଓ ଜୀବନ ସବୁ ମିଥ୍ୟା କଥା ଉପରେ ନିର୍ଭର କରିଅଛି—କିନ୍ତୁ ତାର ପ୍ରାଣ ଯାଇଛି ପଛକେ ସେ କଦାପି ମିଥ୍ୟା କହିନାହିଁ" ✽ । ଭାରତୀୟ-ମାନଙ୍କର ଏପରି ଉଦାର ମନୋଭାବ କଣ ଗୋଟିଏ ଦୁଇଟି ଯୁଗର ସାମାନ୍ୟ ସାଧନାର ଫଳ ? ସତ ଯୁଗରେ ଏହି ଭାରତ-ଭୂମିରେ

---

✽ 'I have had before me hundreds of cases in which a man's property, liberty or life has depended upon his telling a lie, and he has refused to tell it.' Quoted in R. C. Dutta's 'Civilization in ancient India' vol. II. p. 159, M. R. Feb. 1936, p. 195.

କେତେ ଧର୍ମବୀର, କେତେ ଧର୍ମ ସଂସ୍କାରକ, କେତେ କବି, କେତେ ସାହିତ୍ୟିକ, ବୈଜ୍ଞାନିକ ଓ ଗାଣିତିକ ପଣ୍ଡିତମାନଙ୍କର ଆବିର୍ଭାବ ହୋଇଅଛି—କେତେ ପ୍ରବଳପରାକ୍ରାନ୍ତ ସମୃଦ୍ଧିଶାଳୀ ରାଜ୍ୟର ଉତ୍ଥାନ ଓ ପତନ ହୋଇଅଛି—କେତେ ବିଦ୍ୟା-କେନ୍ଦ୍ରର ଅଭ୍ୟୁଦୟ ଓ ବିଲୟ ହୋଇଅଛି, ତାହା ବର୍ତ୍ତମାନ ଇତିହାସର କଠୋର ସତ୍ୟ—ତାହାର କପୋଳ-କଳ୍ପନା ନୁହେ । *

ଭାରତର ପ୍ରାଚୀନ ସଭ୍ୟତା ଓ ସଂସ୍କୃତି ଆଲୋଚନା କଲେ, ସ୍ୱତଃ ମନରେ ପ୍ରଶ୍ନ ଉଠେ, "ଏ ଦେଶର ପ୍ରାଚୀନ କାଳର ଶିକ୍ଷା-ପଦ୍ଧତି କିପରି ଥିଲା ?" "ସେ କାଳର ଯୁବକ ଓ ନାଗରିକମାନଙ୍କର ଲକ୍ଷ୍ୟ କଣ ଥିଲା ?" "ସେହି ଶିକ୍ଷା-ବିଧାନ ଯୁବକମାନଙ୍କର ମନୁଷ୍ୟତା ବିକାଶ କରିବାରେ କେତେଦୂର ଉପଯୋଗୀ ହୋଇ-ଥିଲା ?" ଏ ପ୍ରଶ୍ନମାନଙ୍କର ସମ୍ପୂର୍ଣ୍ଣ ଓ ସନ୍ତୋଷଜନକ ଉତ୍ତର ଦେବା ବଡ଼ ସହଜ ବ୍ୟାପାର ନୁହେ । ପ୍ରାଚୀନ କାଳରେ ଆଜିକାଲି ପରି ଶିକ୍ଷା-ବିଭାଗ କୌଣସି ରାଜକୀୟ କିମ୍ବା ରାଷ୍ଟ୍ରୀୟ ତତ୍ତ୍ୱାବଧାନରେ ନ ଥିଲା । ହିନ୍ଦୁ ରାଜାମାନେ ବିପୁଳ ଅର୍ଥ ଦାନଦ୍ୱାରା ଦେଶର ଶିକ୍ଷା ପ୍ରଣାଳୀକୁ ଉତ୍ସାହିତ କରୁଥିଲେ । କିନ୍ତୁ କୌଣସି ବିଦ୍ୟାଳୟ କିମ୍ବା ବିଶ୍ୱବିଦ୍ୟାଳୟ ରାଜ-ସରକାରର ସାକ୍ଷାତ୍ ଅଧୀନରେ ନ ଥିଲା । ପ୍ରାଚୀନ ଓ ମଧ୍ୟ ଯୁଗର ଇତିହାସ ପରି ଶିକ୍ଷା ସେ ଯୁଗରେ

---

* 'At all times in her History India has produced some of the finest and most subtle intellects of which the human race is capable, and great men of action as well as profound thinkers'—Sir Valentine Chirol, 'India'. p. 6

ଭାରତରେ ଧର୍ମର ଏକ ଅଚ୍ଛେଦ୍ୟ ଅଙ୍ଗ ଥିଲା । ଇଉରୋପରେ ଯେପରି ଚର୍ଚ୍ଚଗୁଡ଼ିକ ବିଦ୍ୟାର ପ୍ରଧାନ ପୀଠସ୍ଥଳୀ ଥାଇ ଜ୍ଞାନର ଆଲୋକ ଜନ ସମାଜରେ ବିତରଣ କରୁଥିଲା, ସେହିପରି ପ୍ରାଚୀନ ଭାରତରେ ଋଷି-ମାନଙ୍କର ଆଶ୍ରମ, ମୁନିମାନଙ୍କର ଶତ ବସନ୍ତ ଲୀଳାସ୍ନିଗ୍ଧ ହୋମାନଳ ଧୂମାସ୍ନିଗ୍ଧ ପବିତ୍ର ତପୋବନ ଓ ବୌଦ୍ଧ ଭିକ୍ଷୁମାନଙ୍କର ବିହାର ବିଦ୍ୟାଚର୍ଚ୍ଚାର ପ୍ରଧାନ କେନ୍ଦ୍ର-ଭୂମି ଥିଲା । ଏହିଠାରେ ସହସ୍ର ସହସ୍ର ଛାତ୍ର ଶିକ୍ଷାଲାଭ କରି ଗୁରୁଙ୍କ ଚରଣ ବନ୍ଦନା କରି ସଂସାର-କ୍ଷେତ୍ରରେ ପ୍ରବେଶ କରୁଥିଲେ । ବିଂଶ ଶତାବ୍ଦୀରେ ପ୍ରଚଳିତ ଆଧୁନିକ ଭାରତର ଶିକ୍ଷା-ପଦ୍ଧତି ସଙ୍ଗେ ସେ ଯୁଗର ଶିକ୍ଷା-ପ୍ରଣାଳୀର କୌଣସି ସାମଂଜସ୍ୟ ଦେଖାଯାଏ ନାହିଁ । ଏବେ ଶିକ୍ଷା ଦାନ ଓ ବିଦ୍ୟା ଗ୍ରହଣ ଗୋଟିଏ ବ୍ୟବସାୟଗତ ପଦାର୍ଥ ହୋଇ ପଡ଼ିଛି । କିନ୍ତୁ ପ୍ରାଚୀନ କାଳରେ ଗୁରୁକୁଳରୁ ଗୁରୁଙ୍କର ପାଦ-ପଦ୍ମ ବନ୍ଦନା କରି ଶିଷ୍ୟ ଯେତେବେଳେ ଘର-ବିଦାୟ ନେଉଥିଲା, ସେତେବେଳେ ଗୁରୁ ଶିଷ୍ୟଙ୍କୁ ଶେଷ ଆଶିଷ ଦେଇ କହୁଥିଲେ, "ସତ୍ୟଂ ବ୍ରୂୟାତ୍, ପ୍ରିୟଂ ବ୍ରୂୟାତ୍, ମା ବ୍ରୂୟାତ୍ ସତ୍ୟମପ୍ରିୟଂ ।" ପିତାମାତା ଓ ଅନ୍ୟାନ୍ୟ ଗୁରୁଜନମାନଙ୍କୁ ଭକ୍ତି କର । ଉଚ୍ଚ ଆଦର୍ଶରେ ତୁମ୍ଭର ଉଦାର ଜୀବନ ଆଲୋକିତ ଓ ଅନୁପ୍ରାଣିତ ହେଉ । ଜୀବନରେ ଯେପରି ତୁମ୍ଭେ କଦାପି ଲକ୍ଷ୍ୟଭ୍ରଷ୍ଟ ନ ହୁଅ । ତୁମ୍ଭର ଯେପରି କେତେବେଳେ ପଦ-ସ୍ଖଳନ ନ ହୁଏ । ଏପରି ମହୀୟାନ୍ ଓ ଗମ୍ଭୀର ଉପଦେଶ, ଏବେ କେତେଜଣ ଗୁରୁ ଛାତ୍ରମାନଙ୍କୁ ଦିଅନ୍ତି ? ଦେଲେ ସୁଦ୍ଧା କେତେଜଣ ଛାତ୍ର ସେହି ଉପଦେଶକୁ କାର୍ଯ୍ୟରେ ପରିଣତ କରିବାକୁ ଚେଷ୍ଟା କରନ୍ତି ? ପ୍ରାଚୀନ ଭାରତରେ ଶିକ୍ଷାପାଇଁ ଛାତ୍ରମାନଙ୍କର କୌଣସି ସମୟ ନିର୍ଦ୍ଦିଷ୍ଟ ନ ଥିଲା । ସମଗ୍ର ଜୀବନକୁ ସେମାନେ ବିଦ୍ୟା-ଚର୍ଚ୍ଚାରେ ନିୟୋଜିତ କରୁଥିଲେ । ପ୍ରତ୍ୟେକଙ୍କର ଜୀବନ ଗୋଟିଏ ସ୍ତର

କିମ୍ବା ଚାରିବର୍ଣ୍ଣ ବିଭାଗରେ ବିଭକ୍ତ ହୋଇଥିଲା । ପ୍ରତ୍ୟେକ ଲୋକ ଶିକ୍ଷା ସମାପ୍ତ କରି ଗୃହୀ ହେଉଥିଲା, ଗୃହୀ ହେବା ପରେ ବନବାସୀ ହେଉଥିଲା, ବନବାସୀ ହେବା ପରେ ସଂସାର ତ୍ୟାଗ କରୁଥିଲା ।*

ସେ ଯାହା ହେଉ, ପ୍ରାଚୀନ ଭାରତରେ ବିଶ୍ୱବିଦ୍ୟାଳୟ କେଉଁଠାରେ ଥିଲା ? ସେଠାରେ କି ପ୍ରକାର ଶିକ୍ଷା-ପ୍ରଣାଳୀ ପ୍ରଚଳିତ ଥିଲା ? କେଉଁ କେଉଁ ଶ୍ରେଣୀର ଛାତ୍ର ସେଠାରେ ଅଧ୍ୟୟନ କରୁଥିଲେ ? କିଏ ସେମାନଙ୍କର ଅଧ୍ୟାପନାର ଗୁରୁ ଦାୟିତ୍ୱ ବହନ କରୁଥିଲେ ? ସେ ବିଶ୍ୱବିଦ୍ୟାଳୟମାନଙ୍କରେ କି ପ୍ରକାର ପାଠ୍ୟ ପୁସ୍ତକର ପ୍ରଚଳନ ଥିଲା ? ଏହିସବୁ ବିଶାଳ ଶିକ୍ଷାନୁଷ୍ଠାନମାନଙ୍କର ବିପୁଳ ବ୍ୟୟ କିଏ ବହନ କରୁଥିଲା ? ଏହିସବୁ ସମସ୍ୟାର ଆଲୋଚନା କରିବା ଏ ପ୍ରବନ୍ଧର ଉଦ୍ଦେଶ୍ୟ । ପ୍ରାଚୀନ ଯୁଗରେ ପଶ୍ଚିମ-ଭାରତ ହିନ୍ଦୁ-ସଭ୍ୟତା ଓ ସଂସ୍କୃତିର ପୀଠସ୍ଥଳୀ ଥିଲା । କାଶ୍ମୀର, ବଦରିକାଶ୍ରମ ଓ ତକ୍ଷଶିଳା ବିଦ୍ୟାର ପୀଠସ୍ଥଳୀ ରୂପେ ଅନେକ କାଳ ପର୍ଯ୍ୟନ୍ତ ସୁଖ୍ୟାତି ଅର୍ଜ୍ଜନ କରିଥିଲେ । ଭାରତର ପ୍ରତ୍ୟେକ ସ୍ଥାନରୁ ଏହି କେନ୍ଦ୍ରମାନଙ୍କୁ ବିଦ୍ୟାର୍ଜ୍ଜନ କରିବା ନିମନ୍ତେ ବିଦ୍ୟାର୍ଥୀମାନେ ଆସୁଥିଲେ । ରାଜନୈତିକ ପଟ୍ଟ-ପରିବର୍ତ୍ତନ ସଙ୍ଗେ ସଙ୍ଗେ ହିନ୍ଦୁ-ସଭ୍ୟତା ଓ ସଂସ୍କୃତି ପଶ୍ଚିମ-ଭାରତ ଛାଡ଼ି ପୂର୍ବ ଭାରତର ଆଶ୍ରୟ ନେଲା । ମୌର୍ଯ୍ୟ ଓ ଗୁପ୍ତସମ୍ରାଟମାନଙ୍କର ରାଜତ୍ୱକାଳରେ ମଗଧ, କାଶୀ, ବିଦେହ ପ୍ରଭୃତି ବିଦ୍ୟାକେନ୍ଦ୍ର ରୂପେ ପ୍ରସିଦ୍ଧି ଲାଭ କଲେ । ଆଜିକାଲି ପରି ସେ ଯୁଗରେ ଶିକ୍ଷା-ଦାନ ନିମନ୍ତେ ସହସ୍ର ସହସ୍ର ମୁଦ୍ରା ବ୍ୟୟିତ

---

* 'ବ୍ରହ୍ମଚାରୀ ଭୂତ୍ୱା ଗୃହୀ ଭବେତ୍, ଗୃହୀଭୂତ୍ୱା ବନୀ ଭବେତ୍, ବନୀ ଭୂତ୍ୱା ପ୍ରବ୍ରଜେତ୍" Jabala Upanishad 4

Quoted in Education in Ancient India by N. C. Mazumdar, p. 53

ହୋଇ ଜଗତ୍ଙ୍କ ଦୌଧ ନମିଲ ହେଉ ନ ଥିଲା । ଅରଣ୍ୟ-ପ୍ରଦେଶର ଜନ୍ମୁକ୍ତ ଶୌରଭ-ସ୍ନିଗ୍ଧ ବାୟୁ-ମଣ୍ଡଳରେ, ପ୍ରକୃତିର ନଗ୍ନ ସୌନ୍ଦର୍ଯ୍ୟର ସୁକୋମଳ କ୍ରୋଡ଼ରେ ଛାତ୍ରମାନେ ବିଦ୍ୟା ଶିକ୍ଷା କରୁଥିଲେ । ଛାତ୍ରମାନଙ୍କ ଚକ୍ଷୁରେ ସେମାନଙ୍କର ଗୁରୁ ଯେପରି ଗୋଟିଏ ଉପାସ୍ୟ ଦେବତା, ବିଦ୍ୟା ପ୍ରଦାନ କରିବାର ଯୌଗିଶକ୍ତି ଯେନ ସେ ଯେପରି ଏ ସଂସାରରେ ଜନ୍ମ ହୋଇଅଛନ୍ତି ।

ସେ ଯୁଗରେ ବିଦ୍ୟାର ପ୍ରଧାନ ପୃଷ୍ଠପୋଷକ ଥିଲେ ହିନ୍ଦୁ ରାଜା । ପ୍ରତ୍ୟେକ ରାଜଦରବାରରେ ଅସାମାନ୍ୟ ପାଣ୍ଡିତ୍ୟସଂପନ୍ନ ଗୁଣୀ ଲୋକ ଥିଲେ । ବିଦେହ, କାଶୀ ଓ କୁରୁପାଞ୍ଚାଳମାନଙ୍କର ରାଜାମାନେ ଅନେକ ପଣ୍ଡିତ ଓ ବିଦ୍ୱାନ୍ ଲୋକଙ୍କୁ କେବଳ ବିଦ୍ୟା ଚର୍ଚ୍ଚା ସକାଶେ ରାଜକୋଷରୁ ଧନ ବ୍ୟୟ କରି ପ୍ରତିପୋଷଣ କରୁଥିଲେ । ବିଦେହର ରାଜା ଜନକ ମହର୍ଷିଙ୍କ ରାଜ-ସଭା ବେଦାଧ୍ୟୟନରେ ମନ୍ତ୍ରର ମୁଖରିତ ହେଉଥିଲା । ଶୈଶୁନାଗ ଅଜାତଶତ୍ରୁ ବିଦ୍ୟାର ପ୍ରଧାନ ପୃଷ୍ଠପୋଷକ ଥିଲେ । ଗୁପ୍ତବଂଶର ସମ୍ରାଟ ସମୁଦ୍ର ଗୁପ୍ତ ଓ ଚନ୍ଦ୍ରଗୁପ୍ତ କେବଳ ଯେ କାଳିଦାସ ପ୍ରଭୃତି ମହାକବିମାନଙ୍କର ପୃଷ୍ଠପୋଷକ ଥିଲେ ତାହା ନୁହେଁ, ସମଗ୍ର ଭାରତରେ ଜ୍ଞାନର ଶୁଭ୍ର ଆଲୋକ ବିକୀରଣ କରିବା ନିମନ୍ତେ ସୁକୋମଳ ଦୁଗ୍ଧଫେନନିଭ ଶଯ୍ୟା ପରିତ୍ୟାଗ କରି କଠିନ ଲେଖନୀ ଧାରଣ କରୁଥିଲେ । ବିଦ୍ୟାର ମହତ୍ତ୍ୱ ଦେଶର ଗୃହେ ଗୃହେ ଫୁଟି ଉଠୁଥିଲା । ସେଥିସକାଶେ ସେକାଳର ଲୋକେ ଧନ ଅପେକ୍ଷା ବିଦ୍ୟାକୁ ଅଧିକ ସମ୍ମାନ ଦେଉଥିଲେ । ବିଦ୍ୱାନ୍ ଲୋକମାନେ ଅତୁଳ ସଂପଦ ଓ ଇନ୍ଦ୍ରବିଭବକୁ ପାଦରେ ଠେଲି ଦେଉଥିଲେ । ସୁତରାଂ ଅତି ପ୍ରାଚୀନ କାଳରେ ଏ ଦେଶରେ ଯେ ଅତି ଉନ୍ନତ ଓ ଉଚ୍ଚ ଧରଣର ଶିକ୍ଷା ପ୍ରଣାଳୀ ପ୍ରଚଳିତ ଥିଲା ଏଥିରେ ସନ୍ଦେହ କରିବାର କୌଣସି କାରଣ ନାହିଁ ।

ରାଜସଭା ଛଡ଼ା ବିଦ୍ୟାଚର୍ଚ୍ଚା ନିମନ୍ତେ ସ୍ଥାନେ ସ୍ଥାନେ ବ୍ରାହ୍ମଣମାନେ "ପରିଷଦ୍"ମାନ ସ୍ଥାପନ କରିଥିଲେ । ହିନ୍ଦୁ ଭାରତର ପ୍ରତ୍ୟେକ ରାଜାଙ୍କର ରାଜଧାନୀରେ ଏହିପରି ଗୋଟିଏ ଗୋଟିଏ "ପରିଷଦ୍" ଥିଲା । ଇଉରୋପର ବିଶ୍ୱବିଦ୍ୟାଳୟ ପରି ଅନେକ ଛାତ୍ର ଏହି "ପରିଷଦ୍"ର ବିଦ୍ୟାଚର୍ଚ୍ଚାରେ ଯୋଗ ଦେଇ ଜ୍ଞାନ ଅର୍ଜ୍ଜନ କରୁଥିଲେ । ମନୁଙ୍କ ମତରେ ପ୍ରତ୍ୟେକ ପରିଷଦ୍‌ରେ ୨୧ ଜଣ ବ୍ରାହ୍ମଣ ଅଧ୍ୟାପକ ରହିବା ଉଚିତ । ସେମାନେ ଧର୍ମ୍ମଶାସ୍ତ୍ର, ଦର୍ଶନ ଓ ବେଦାନ୍ତରେ ଅସାଧାରଣ ପାଣ୍ଡିତ୍ୟ ଅର୍ଜ୍ଜନ କରିଥିବେ । 'ପରିଷଦ୍' ବ୍ୟତୀତ ପ୍ରତ୍ୟେକ ଗୁରୁ ନିଜ ନିଜ ଘରେ ଗୋଟିଏ ଗୋଟିଏ ବିଦ୍ୟାଳୟ ସ୍ଥାପନ କରିଥିଲେ । ଏହି ବିଦ୍ୟାଳୟ ଉପରେ ରାଜାମାନଙ୍କର କୌଣସି ପ୍ରଭୁତ୍ୱ ନ ଥିଲା । ଏହି ବିଦ୍ୟାଳୟଗୁଡ଼ିକ ପ୍ରତ୍ୟେକ ଅଧ୍ୟାପକଙ୍କର ବ୍ୟକ୍ତିଗତ ସମ୍ପତ୍ତି । ଛାତ୍ରମାନେ ପ୍ରାୟ ବାରବର୍ଷ କାଳ ଗୁରୁ ଗୃହରେ ଅଧ୍ୟୟନ କରି ଘରକୁ ଫେରୁଥିଲେ ।

ବୈଦିକ ଯୁଗରେ ଆଧୁନିକ ଯୁଗର ବିଶ୍ୱବିଦ୍ୟାଳୟ ପରି କୌଣସି ବିରାଟ ଶିକ୍ଷାନୁଷ୍ଠାନମାନ ଥିଲା କି ନାହିଁ—ସେ ବିଷୟରେ କୌଣସି ଐତିହାସିକ ପ୍ରମାଣ ଅନ୍ତତଃ ଏ ପର୍ଯ୍ୟନ୍ତ ମିଳି ନାହିଁ । ସେତେବେଳେ ମୁନି ଋଷିମାନେ ତପୋବନ କିମ୍ବା ଆଶ୍ରମରେ ବ୍ୟକ୍ତିଗତ ଭାବରେ ଶିଷ୍ୟମାନଙ୍କୁ ବିଦ୍ୟା ଦାନ କରୁଥିଲେ । ଶିଷ୍ୟମାନେ କେବଳ ଯେ ଗୁରୁମାନଙ୍କଠାରୁ ବିନା ବେତନରେ ବିଦ୍ୟା ଶିକ୍ଷା କରୁଥିଲେ ତାହା ନୁହେଁ, ସେମାନେ ନାନାଭାବରେ ଗୁରୁଙ୍କର ସେବା କରୁଥିଲେ—ଗୁରୁଙ୍କର ଆଜ୍ଞା ସେମାନଙ୍କ ପ୍ରତି ଅଲଙ୍ଘ୍ୟ ଥିଲା । ଗୁରୁଙ୍କର ହୋମ ସକାଶେ ସେମାନେ ତପୋବନରୁ କୁଶ ସମିଧ ସଂଗ୍ରହ କରି ଆଣୁଥିଲେ । କାଳକ୍ରମେ ତପୋବନର ଏହି କ୍ଷୁଦ୍ର ନଗଣ୍ୟ ଶିକ୍ଷାନୁଷ୍ଠାନ ଗୋଟିଏ ଗୋଟିଏ ବିରାଟ ବିଦ୍ୟା-

କେନ୍ଦ୍ରରେ ପରିଣତ ହେଲା । ଜନ ସଂଖ୍ୟା ଓ ସଭ୍ୟତାର ବୃଦ୍ଧି ସଙ୍ଗେ ସଙ୍ଗେ ଛାତ୍ରସଂଖ୍ୟା ମଧ୍ୟ ବଢ଼ିଲେ—ଏହି ଅନୁଷ୍ଠାନମାନଙ୍କର ସଂଖ୍ୟା ମଧ୍ୟ ବଢ଼ିଲା । ବିଦ୍ୟା-କେନ୍ଦ୍ର ସବୁ କେବଳ ମୁନିମାନଙ୍କର ତପୋବନରେ ସୀମାବଦ୍ଧ ନ ରହି ନଗର ଓ ପ୍ରସିଦ୍ଧ ସ୍ଥାନମାନଙ୍କରେ ବ୍ୟାପିଗଲା । କ୍ରମେ ବିଦ୍ୟାଚର୍ଚ୍ଚାର ପ୍ରସାର ବଢ଼ିଲା । ବୌଦ୍ଧ ଯୁଗରେ ଭାରତର ନାନାସ୍ଥାନରେ ପ୍ରକାଣ୍ଡ ବିଦ୍ୟାକେନ୍ଦ୍ର ଓ ବିଶ୍ୱବିଦ୍ୟାଳୟମାନ ସ୍ଥାପିତ ହେଲା । ଗୋଟିଏ ଗୋଟିଏ ବିଶ୍ୱବିଦ୍ୟାଳୟରେ ସହସ୍ର ସହସ୍ର ଛାତ୍ର ଅଧ୍ୟୟନ କରିବାକୁ ଲାଗିଲେ । ବହୁ ସଂଖ୍ୟକ ପ୍ରବୀଣ ଅଧ୍ୟାପକ ଏହି ବିଶ୍ୱବିଦ୍ୟାଳୟମାନଙ୍କରେ ଅଧ୍ୟାପନା କାର୍ଯ୍ୟରେ ନିଯୁକ୍ତ ହେଲେ । ବୌଦ୍ଧ ଶାସ୍ତ୍ର, ଅନୁଶାସନ ଏବଂ ବୈଦେଶିକ ପର୍ଯ୍ୟଟକ-ମାନଙ୍କର ଭ୍ରମଣ ବୃତ୍ତାନ୍ତରେ ଏହି ବିଶ୍ୱବିଦ୍ୟାଳୟମାନଙ୍କର ସବିଶେଷ ଉଲ୍ଲେଖ ଦେଖାଯାଏ । ବେନାରସ, ତକ୍ଷଶିଳା, କାଞ୍ଚି, ବିଦର୍ଭ ଓ ନାଳନ୍ଦାରେ ବୌଦ୍ଧ ଯୁଗର ପ୍ରଧାନ ବିଦ୍ୟାକେନ୍ଦ୍ରମାନ ଥିଲା । ସମଗ୍ର ଭାରତରେ ସେତେବେଳେ ବୌଦ୍ଧ ମଠର ସଂଖ୍ୟା କମ୍ ନ ଥିଲା । ପ୍ରତ୍ୟେକ ବୌଦ୍ଧମଠ ବିଦ୍ୟାଚର୍ଚ୍ଚାର ପ୍ରଧାନ ପୀଠ-ସ୍ଥଳୀ ଥିଲା । ବୌଦ୍ଧଯୁଗର ବିଦ୍ୟା-କେନ୍ଦ୍ରମାନ ବୌଦ୍ଧ ରାଜାମାନଙ୍କର ଆର୍ଥିକ ସାହାଯ୍ୟରେ ପରିଚାଳିତ ହେଉଥିଲା । ସେଥି ସକାଶେ ଜାତି ଧର୍ମ ନିର୍ବିଶେଷରେ ସମସ୍ତେ ଏଠାରେ ସମାନ ଆସନରେ ବସି ବିଦ୍ୟା ଶିକ୍ଷା କରିବାର ସୁବିଧା ପାଉଥିଲେ । ତକ୍ଷଶିଳା ବିଶ୍ୱ-ବିଦ୍ୟାଳୟ ବୌଦ୍ଧଯୁଗର ପ୍ରଧାନ ବିଦ୍ୟା-କେନ୍ଦ୍ର ଥିଲା ।

———

# ତକ୍ଷଶିଳା ବିଶ୍ୱବିଦ୍ୟାଳୟ

ଖ୍ରୀଷ୍ଟପୂର୍ବ ଷଷ୍ଠ ଶତାବ୍ଦୀରେ ଉତ୍ତର-ପଶ୍ଚିମ ଭାରତରେ ବିଦ୍ୟାର ପ୍ରଧାନ କେନ୍ଦ୍ରସ୍ଥଳୀ ଥିଲା ତକ୍ଷଶିଳା (Taxila)। ଏହି ତକ୍ଷଶିଳା ନଗରୀ ଆଧୁନିକ ରାୱଲପିଣ୍ଡିର ଉତ୍ତର-ପଶ୍ଚିମରେ ଅବସ୍ଥିତ। ଆଲେକ୍‌ଜାଣ୍ଡରଙ୍କର ଭାରତ-ଆକ୍ରମଣ ପୂର୍ବରୁ ଅର୍ଥାତ୍ ଖ୍ରୀଷ୍ଟପୂର୍ବ ଚତୁର୍ଥ ଶତାବ୍ଦୀରେ ମଧ୍ୟ ତକ୍ଷଶିଳା ପ୍ରଧାନ ବିଦ୍ୟା-କେନ୍ଦ୍ରରୂପେ ପ୍ରତିଷ୍ଠା ଓ ପ୍ରସିଦ୍ଧି ଲାଭ କରିଥିଲା। ଏଠାରେ ଗୋଟିଏ ପ୍ରକାଣ୍ଡ ବିଶ୍ୱ-ବିଦ୍ୟାଳୟ ଥିଲା। ଦେଶ ବିଦେଶରୁ ସହସ୍ର ସହସ୍ର ଛାତ୍ର ଏଠାରେ ସମବେତ ହୋଇ ବିଦ୍ୟାଧ୍ୟୟନ କରୁଥିଲେ *। ଗ୍ରୀକ୍ ପରିବ୍ରାଜକମାନଙ୍କର ବିବରଣୀରୁ ତକ୍ଷଶିଳା ସମ୍ବନ୍ଧରେ ଅନେକ କଥା ଜଣାଯାଏ। ଅନେକ ଗ୍ରୀକ୍ ପଣ୍ଡିତମାନଙ୍କ ମତରେ ଆଲେକ୍‌ଜାଣ୍ଡରଙ୍କର ଭାରତ-ଆକ୍ରମଣ ସମୟରେ ତକ୍ଷଶିଳା ବିଦ୍ୟାର ପ୍ରଧାନ କେନ୍ଦ୍ର-ସ୍ଥଳୀ ଥିଲା। ସୁତରାଂ ବିଦ୍ୟାର୍ଥୀର ପ୍ରଧାନ ପୀଠସ୍ଥଳୀ ଭାବରେ ପ୍ରସିଦ୍ଧି ଲାଭ କରିବାକୁ ତକ୍ଷଶିଳାକୁ ବହୁକାଳ ଲାଗିଥିବ। ବୁଦ୍ଧଦେବଙ୍କ ଆବିର୍ଭାବ ସମୟରେ ତକ୍ଷଶିଳା ଯେ ଉତ୍ତର-ପଶ୍ଚିମ

---

* "Taxila, now represented by more than twelve square miles of ruins to the north-west of Rawalpindi × ×, was then (during Alexander's invasion of India) one of the greatest cities of the east, and was famous as the principal seat of Hindi learning in Northern India, to which scholars of all classes, flocked for instruction, especially in medical sciences"—Smith, the Early History of India, p. 61.

ଭାରତରେ ବିଦ୍ୟାର ପ୍ରଧାନ ପୀଠସ୍ଥଳୀ ଥିଲା, ଏପରି ଅନୁମାନ କରିବା ଅସମୀଚୀନ ନୁହେଁ । ବୌଦ୍ଧ ଜାତକମାନଙ୍କରେ ମଧ୍ୟ ତକ୍ଷଶିଳା ବିଶ୍ୱବିଦ୍ୟାଳୟ ସମ୍ବନ୍ଧରେ ଅନେକ କଥାର ଉଲ୍ଲେଖ ଅଛି । ବୌଦ୍ଧ ଜାତକ କେଉଁଯୁଗର ଲେଖା ଐତିହାସିକମାନେ ଏପର୍ଯ୍ୟନ୍ତ ନିର୍ଣ୍ଣୟ କରି ପାରି ନାହାନ୍ତି । ତେବେ ମୂଳତଃ ବୌଦ୍ଧ ଜାତକ ସବୁ ଯେ ଖ୍ରୀଷ୍ଟପୂର୍ବ ଷଷ୍ଠ ଓ ସପ୍ତମ ଶତାବ୍ଦୀର ଲେଖା ଏଥିରେ ଐତିହାସିକମାନଙ୍କର ମତ-ଦ୍ୱୈଧ ନାହିଁ । ଅଧିକାଂଶ ଜାତକ ସମ୍ଭବତଃ ଆଲେକ୍‌ଜାଣ୍ଡରଙ୍କର ଭାରତ-ଆକ୍ରମଣ ପୂର୍ବରୁ ଲିଖିତ ହୋଇଥିଲା * । ଏହି ଜାତକମାନଙ୍କରୁ ତକ୍ଷଶିଳା ବିଶ୍ୱ-ବିଦ୍ୟାଳୟ ସମ୍ବନ୍ଧରେ ଅନେକ ଐତିହାସିକ ତତ୍ତ୍ୱ ମିଳେ † । ତକ୍ଷଶିଳା ନଗରୀ ଖୋଳା ଯାଇ କେତେକ ବର୍ଷ ତଳେ ଏହି ସ୍ଥାନରୁ ବିଶ୍ୱ-ବିଦ୍ୟାଳୟର ଅନେକ ଧ୍ୱଂସାବଶେଷ ଆବିଷ୍କୃତ ହୋଇଅଛି ‡ । ସେ ଯାହା ହେଉ ଅନୁମାନ କରିବା ସ୍ୱାଭାବିକ ଯେ ଖ୍ରୀଷ୍ଟପୂର୍ବ ଷଷ୍ଠ କିମ୍ବା ସପ୍ତମ ଶତାବ୍ଦୀରେ ତକ୍ଷଶିଳା ଉତ୍ତରଭାରତର ପ୍ରଧାନ ବିଦ୍ୟା-କେନ୍ଦ୍ର ଥିଲା ।

ସାଧାରଣ ପ୍ରାରମ୍ଭିକ ଶିକ୍ଷା ସମାପ୍ତ କରି ବିଦ୍ୟାର୍ଥୀମାନେ ଉଚ୍ଚଶିକ୍ଷା ଲାଭ କରିବା ନିମନ୍ତେ ସେତେବେଳେ ବହୁତ ବହୁତ

---

* "Most of the Jatakas, probably, are anterior to Alexander's time." Smith—Early History of India, p. 62 F. N.

† Jataka—Vol II (Rouse) 2, 32, 59.

‡ Dr. Marshall—"Archaeological Discoveries at Taxila"—delivered before the Punjab Historical Society on Sept, 4, 1913.

ବିଦ୍ୟାକେନ୍ଦ୍ର ଓ ବିଶ୍ୱବିଦ୍ୟାଳୟକୁ ଯାଉଥିଲେ । ବିଶ୍ୱବିଦ୍ୟାଳୟରେ ପ୍ରବେଶ ଲାଗି ବାରବର୍ଷ ପୂର୍ବରୁ ଛାତ୍ରମାନଙ୍କୁ ଲିଖନ, ପଠନ ଓ ଗଣିତ ମଧ୍ୟ ଶିକ୍ଷା ଦିଆ ଯାଉଥିଲା । ସାଧାରଣ ପ୍ରାରମ୍ଭିକ ଶିକ୍ଷା ଶେଷ କରି ଛାତ୍ରମାନେ ଗାନ୍ଧାର ପ୍ରଦେଶ ଅନ୍ତର୍ଗତ ତକ୍ଷଶିଳା ବିଶ୍ୱ-ବିଦ୍ୟାଳୟକୁ ଉଚ୍ଚଶିକ୍ଷା ସକାଶେ ଯାଉଥିଲେ । ସେତେବେଳେ ତକ୍ଷଶିଳାର ସୁଖ୍ୟାତି କେବଳ ଭାରତରେ ସୀମାବଦ୍ଧ ନ ଥିଲା—ଏସିଆ ମହାଦେଶର ଅନ୍ୟାନ୍ୟ ସ୍ଥାନରୁ ମଧ୍ୟ ଅନେକ ଛାତ୍ର ଏଠୁ ତକ୍ଷଶିଳାରେ ଅଧ୍ୟୟନ କରିବାକୁ ଆସୁଥିଲେ । ଖ୍ରୀଷ୍ଟପୂର୍ବ ଷଷ୍ଠ ଓ ସପ୍ତମ ଶତାବ୍ଦୀରେ ଏହା ଭାରତର ଶିକ୍ଷା, ସଂସ୍କୃତି ଓ ସଭ୍ୟତାର ପ୍ରଧାନ ପୀଠସ୍ଥଳୀ ଥିଲା * ।

ତକ୍ଷଶିଳା ଥିଲା ସେ ଯୁଗର ଅକ୍ସଫୋର୍ଡ ବିଶ୍ୱବିଦ୍ୟାଳୟ । ସମସ୍ତ ଭାରତ-ଭୂମିରେ ତକ୍ଷଶିଳା-ବିଶ୍ୱବିଦ୍ୟାଳୟ ଜ୍ଞାନାଲୋକ ବିସ୍ତାରଣ କରୁଥିଲା । ତକ୍ଷଶିଳାରେ ଅଧ୍ୟୟନ କରିବା ସେତେବେଳେ ପ୍ରତ୍ୟେକ ବିଦ୍ୟାର୍ଥୀର ଜୀବନର ପ୍ରଧାନ ଲକ୍ଷ୍ୟ ଥିଲା । ତକ୍ଷଶିଳାରେ ବିଦ୍ୟା ଶିକ୍ଷା ନ କଲେ, କୌଣସି ବିଦ୍ୟାର୍ଥୀର ଶିକ୍ଷା ସମ୍ପୂର୍ଣ୍ଣ ହେଉ ନ ଥିଲା । ଆର୍ଯ୍ୟାବର୍ତ୍ତ ଓ ପୂର୍ବ ଭାରତର ସୁଦୂର ପଲ୍ଲୀରୁ ମଧ୍ୟ ଅସଂଖ୍ୟ ଛାତ୍ର ହିଂସ୍ରଜନ୍ତୁପରିପୂର୍ଣ୍ଣ ଦୁର୍ଭେଦ୍ୟ ଅରଣ୍ୟ ଭେଦ କରି ତକ୍ଷଶିଳାକୁ ଆସୁଥିଲେ । 'ତିଲାମୁଣ୍ଠି' ଜାତକରେ ଉଲ୍ଲେଖ ଅଛି, ରାଜାମାନେ ନିଜ ନିଜ ରାଜ୍ୟରେ ବିଦ୍ୱାନ୍ ଓ ପ୍ରସିଦ୍ଧ ଶିକ୍ଷକ ନିଯୁକ୍ତ କରୁଥିଲେ

---

* "Takshasila, in the kingdom of Gandhar, was by far the most important and well renowned of all places that imparted higher education"—Journal of the Bihar and Orissa R. Society, p. 149.

ସୁଦ୍ଧା, ପୁତ୍ରମାନଙ୍କୁ ସୁଦୂର ତକ୍ଷଶିଳା ନଗରକୁ ଶିକ୍ଷା ସମାପନ କରିବା ନିମନ୍ତେ ପଠାଉଥିଲେ * । ଅନେକ ବଡ଼ ବଡ଼ ସମୃଦ୍ଧିଶାଳୀ ରାଜ୍ୟର ଯୁବରାଜମାନେ ମଧ୍ୟ ଏହି ତକ୍ଷଶିଳା-ବିଶ୍ୱବିଦ୍ୟାଳୟରେ ଅଧ୍ୟୟନ କରୁଥିଲେ ଏବଂ ଏଠାରେ ବିଦ୍ୟାଶିକ୍ଷା ନ କଲେ କୌଣସି ଯୁବରାଜର ଶିକ୍ଷା ପୂର୍ଣ୍ଣାଙ୍ଗ କିମ୍ବା ପରିପକ୍ୱ ହେଉ ନ ଥିଲା । କୋଶଳର ରାଜା ପ୍ରସେନଜିତ୍ ତକ୍ଷଶିଳାରେ ଶିକ୍ଷା ଲାଭ କରିଥିଲେ † । ବ୍ରାହ୍ମଣମାନଙ୍କର ତକ୍ଷଶିଳା ପ୍ରଧାନ ବିଦ୍ୟା-କେନ୍ଦ୍ର ଥିଲା । ଅନେକ ବ୍ରାହ୍ମଣସନ୍ତାନ ଏଠାରେ ବିଦ୍ୟା-ଶିକ୍ଷା କରି ଜୀବନକୁ ଧନ୍ୟ ମଣୁଥିଲେ । ଦରିଦ୍ରର ସନ୍ତାନ ପାଇଁ ମଧ୍ୟ ତକ୍ଷଶିଳା ବିଶ୍ୱ-ବିଦ୍ୟାଳୟର ଦ୍ୱାର ଉନ୍ମୁକ୍ତ ଥିଲା ‡ ।

ପ୍ରଥମେ ଏହି ବିଶ୍ୱବିଦ୍ୟାଳୟ ହିନ୍ଦୁରାଜାମାନଙ୍କର ଅର୍ଥରେ ପରିଚାଳିତ ହେଉଥିଲା । ବିଦ୍ୟାର ଷୋଡ଼ଶ ଶାଖା ସକଳ ଏହି ତକ୍ଷଶିଳା ବିଶ୍ୱବିଦ୍ୟାଳୟରେ ଅଧ୍ୟାପିତ ହେଉଥିଲା । ପ୍ରତ୍ୟେକ

---

* "The Tilamurti Jataka", Vol. II. p. 252

† "Educated at the celebrated seat of learning, Takkasila in the extreme north-west, Pasenadi (Prasenjit) was placed, on his return, by his father, Maha Kosala, up on the throne"—Rhys Davids, Buddhist India. p. 8.

‡ "×× frequent statements regarding the instruction of the young Brahmins and nobles show that there was an intellectual centre and that it lay in Takkasila, the capital of distant Gandhara"—Bulher, Indian Studies.

ଶାଖା ନିମନ୍ତେ ଜଣେ ଜଣେ ଅଧ୍ୟାପକ ନିଯୁକ୍ତ ହୋଇଥିଲେ । ଚିତ୍ରବିଦ୍ୟା, ସ୍ଥାପତ୍ୟ, ମୂର୍ତ୍ତିଗଠନ ଏବଂ ନାନାବିଧ ସୁନ୍ଦର ହସ୍ତକର୍ମ ପ୍ରଭୃତି ଏହି ବିଶ୍ୱବିଦ୍ୟାଳୟରେ ଶିକ୍ଷା ଦିଆ ଯାଉଥିଲା । ସୁପ୍ରସିଦ୍ଧ ବୈୟାକରଣିକ ପାତଂଜଳି ଏବଂ ମୌର୍ଯ୍ୟ ସମ୍ରାଟ୍ ଚନ୍ଦ୍ରଗୁପ୍ତଙ୍କର ମନ୍ତ୍ରୀ କୌଟିଲ୍ୟ ଏହି ବିଶ୍ୱବିଦ୍ୟାଳୟରେ ଶିକ୍ଷା ପାଇଥିଲେ । ଏଠାରେ ଛାତ୍ରମାନଙ୍କୁ ବେତନ ଦେବାକୁ ପଡୁ ନ ଥିଲା ।

ତକ୍ଷଶିଳା ବିଶ୍ୱବିଦ୍ୟାଳୟରେ ବିଶେଷ ଭାବରେ ଚିକିତ୍ସା-ବିଜ୍ଞାନ ଅଲୋଚିତ ହେଉଥିଲା * । ରାଜବୈଦ୍ୟ ଜୀବକ, ମଗଧର ରାଜା ବିମ୍ବିସାର ଏବଂ ବୁଦ୍ଧଦେବଙ୍କୁ କଠିନ ରୋଗରୁ ମୁକ୍ତ କରିଥିବା ପ୍ରବାଦ ଇତିହାସ-ପ୍ରସିଦ୍ଧ । ଏହି ଜୀବକ ତକ୍ଷଶିଳା ବିଶ୍ୱବିଦ୍ୟାଳୟରେ ଅଧ୍ୟାପକ ଆତ୍ରେୟ ମହର୍ଷିଙ୍କଠାରୁ ବିଦ୍ୟାଶିକ୍ଷା କରିଥିଲେ । ଚିକିତ୍ସା-ବିଜ୍ଞାନ ବିଭାଗରେ ତକ୍ଷଶିଳା ବିଶ୍ୱବିଦ୍ୟାଳୟ ସେ କାଳରେ ବଡ଼ ଖ୍ୟାତି ଲାଭ କରିଥିଲା । ଅସ୍ତ୍ର ଚିକିତ୍ସା ସାହାଯ୍ୟରେ ଦୁରାରୋଗ୍ୟ ରୋଗ ଆରୋଗ୍ୟର ପ୍ରଣାଳୀ ସେତେବେଳେ ହିନ୍ଦୁ-ଭାରତରେ ପ୍ରଚଳିତ ଥିବାର ପଣ୍ଡିତମାନେ ପ୍ରମାଣ କରନ୍ତି † । ସୁତରାଂ ତକ୍ଷଶିଳା ବିଶ୍ୱବିଦ୍ୟାଳୟରେ ଚିକିତ୍ସା-ବିଜ୍ଞାନର ଅସ୍ତ୍ରପ୍ରୟୋଗ ବିଭାଗ ଯେ ସୁଖ୍ୟାତି ଲାଭ କରି ନ ଥିବ, ତାହା ନୁହେ । ଜୀବକ ପ୍ରାୟ ସାତବର୍ଷ କାଳ ଏହି ବିଶ୍ୱବିଦ୍ୟାଳୟରେ ଚିକିତ୍ସା-ଶାସ୍ତ୍ର ଅଧ୍ୟୟନ କଲା ପରେ ତାଙ୍କର ଗୋଟିଏ ପରୀକ୍ଷା ହେଲା । ସେ ପରୀକ୍ଷାରେ ପ୍ରଶ୍ନ ହେଲା— ତକ୍ଷଶିଳା ନଗରୀର ୧୫ମାଇଲ ଭିତରେ ଥିବା ପ୍ରତ୍ୟେକ ବୃକ୍ଷ, ଲତା,

---

* Early History of India, Smith p. 61.

† 'Surgery in Ancient India, Lewis—'Advance, Oct. 18, 1936.

ଲେଖା, ଶୁଳ୍କ, ଫଳ ଓ ମୂଲ୍ୟମାନଙ୍କର ଦ୍ରବ୍ୟଗୁଣ ସ୍ଥିର କରି ପରୀକ୍ଷକଙ୍କୁ ଜଣାଇବାକୁ ହେବ । ଜୀବକ କହିଲେ, "ଏପରି ବୃକ୍ଷ ନାହିଁ, ଯାହାର କିଛି ନା କିଛି ଉପକାରିତା ନାହିଁ ।" ସେକାଳରେ ବିଶ୍ୱବିଦ୍ୟାଳୟର ପରୀକ୍ଷା-ପ୍ରଣାଳୀ କିପରି ଥିଲା ତାହା ମଧ୍ୟ ଏଥିରୁ ଜଣାଯାଏ * ।

ତକ୍ଷଶିଳା ବିଶ୍ୱବିଦ୍ୟାଳୟର ଖ୍ୟାତି ବହୁକାଳ ପର୍ଯ୍ୟନ୍ତ ଅକ୍ଷୁଣ୍ଣ ଥିଲା । ମୌର୍ଯ୍ୟକୁଳତିଳକ ଅହିଂସାର ଅବତାର ମୌର୍ଯ୍ୟସମ୍ରାଟ୍ ଅଶୋକଙ୍କର ରାଜତ୍ୱକାଳରେ ଖ୍ରୀଷ୍ଟପୂର୍ବ ତୃତୀୟ ଶତାବ୍ଦୀରେ ମଧ୍ୟ ଏହା ଉନ୍ନତ ଓ ସମୃଦ୍ଧିଶାଳୀ ଅବସ୍ଥାରେ ଥିଲା । ସେତେବେଳେ ମଧ୍ୟ ଜାତିଧର୍ମନିର୍ବିଶେଷରେ ସକଳ ହିନ୍ଦୁଗଣ ତକ୍ଷଶିଳାରେ ଅଧ୍ୟୟନ କରୁଥିଲେ ।

କାଳକ୍ରମେ ରାଜନୈତିକ କାରଣବଶତଃ ଭାରତର ଦକ୍ଷିଣ ଓ ପୂର୍ବାଞ୍ଚଳ ସଭ୍ୟତା ଓ ବିଦ୍ୟାର କେନ୍ଦ୍ର ହୋଇ ଉଠିଲା । ବିହାର ହେଲା ସମଗ୍ର ଉତ୍ତର-ଭାରତର ସଭ୍ୟତାର ପୀଠସ୍ଥଳୀ । ବୌଦ୍ଧମଠ ଓ ବିହାର ସବୁ ବିଦ୍ୟାଚର୍ଚ୍ଚାର ପ୍ରଧାନ କେନ୍ଦ୍ର ହେଲା । ବୌଦ୍ଧ-ଭିକ୍ଷୁମାନେ ନାନା ଭାବରେ ଏ ଦେଶରେ ଶିକ୍ଷା-ପ୍ରସାରରେ ସାହାଯ୍ୟ କଲେ । ଯେଉଁଠାରେ କେତେକ ବୌଦ୍ଧଭିକ୍ଷୁ ଏକତ୍ର ବାସ କଲେ ସେଠାରେ ଗୋଟିଏ ବିଶ୍ୱବିଦ୍ୟାଳୟର ଉତ୍ପତ୍ତି ହେଲା ଏବଂ ପ୍ରତ୍ୟେକ ବିଶ୍ୱବିଦ୍ୟାଳୟ ଜଣେ ଜଣେ କୁଳପତିଙ୍କ ଅଧୀନରେ ରହିଲା । କୃଷ୍ଣା ନଦୀକୂଳରେ 'ଶ୍ରୀଧାନ୍ୟକଟକ' ଗୋଟିଏ ପ୍ରଧାନ ବିଶ୍ୱବିଦ୍ୟାଳୟ ଭାବରେ ବହୁକାଳ ସୁଖ୍ୟାତି ଲାଭ କରିଥିଲା । ଏଠାରେ ବ୍ରାହ୍ମଣ ଓ ବୌଦ୍ଧ ଉଭୟ ଧର୍ମର ଛାତ୍ର ଅଧ୍ୟୟନ କରୁଥିଲେ ।

---

* 'Education in Ancient India— Mazumdar, p. 90, Bihar and Orissa Research Society Journal, Vol. IV-P. II.

# ନାଳନ୍ଦ-ବିଶ୍ୱବିଦ୍ୟାଳୟ

ପ୍ରାଚୀନ ଭାରତରେ ଯେତେ ବୌଦ୍ଧ ଶିକ୍ଷାନୁଷ୍ଠାନ, ବିଦ୍ୟାପୀଠ ଓ ବିଶ୍ୱବିଦ୍ୟାଳୟ ଥିଲା, ସେ ସମସ୍ତଙ୍କ ମଧ୍ୟରେ ନାଳନ୍ଦବିହାର କିମ୍ବା ବିଶ୍ୱବିଦ୍ୟାଳୟ ସର୍ବପ୍ରଧାନ । ପ୍ରାୟ ଏକସହସ୍ର ବର୍ଷ ପର୍ଯ୍ୟନ୍ତ ପ୍ରାଚୀନ ଭାରତର ବିଦ୍ୟାକେନ୍ଦ୍ର ଥାଇ ଭାରତରେ ଓ ଏସିଆ ମହାଦେଶର ଅନ୍ୟାନ୍ୟ ଦେଶରେ ଶିକ୍ଷା ଓ ସଭ୍ୟତାର ଆଲୋକ ଏହି ନାଳନ୍ଦ ବିକୀରଣ କରି ସମଗ୍ର ଜଗତରେ ପ୍ରଧାନ ବିଦ୍ୟାକେନ୍ଦ୍ର ରୂପେ ପ୍ରସିଦ୍ଧି ଲଭି କରିଥିଲା । ଦେଶ ବିଦେଶରୁ ସହସ୍ର ସହସ୍ର ବିଦ୍ୟାର୍ଥୀ ଓ ପଣ୍ଡିତମାନେ ଆସି ଏଠାରେ ଅଧ୍ୟୟନ କରି ମନୁଷ୍ୟ ହୋଇଥିଲେ । ଭାରତ ତଥା ସମଗ୍ର ଜଗତର ସଭ୍ୟତା ଓ ସଂସ୍କୃତିର ଉନ୍ନତି ପଥରେ ନାଳନ୍ଦର ଦାନ ମହାସ୍ଥାନ୍ ।

ବିହାରପ୍ରଦେଶରେ ନାଳନ୍ଦ ଯେଉଁ ସ୍ଥାନରେ ଅବସ୍ଥିତ ଥିଲା, ବର୍ତ୍ତମାନ ତାହାର ଆଧୁନିକ ନାମ ବଡ଼ଗାଁ । ବୁଦ୍ଧଙ୍କ ନିର୍ବାଣାନ୍ତର ଚତୁର୍ଥ ଶତାବ୍ଦୀପରେ ରାଜା ଶକ୍ରାଦିତ୍ୟ ବୁଦ୍ଧଦେବଙ୍କର ସ୍ମାରକସ୍ୱରୂପ ଏଠାରେ ଗୋଟିଏ ସଂଘାରାମ ଓ ପୁଷ୍କରିଣୀ କରିଥିଲେ । ଏଠାରେ ନାଳନ୍ଦ ନାମକ ଗୋଟିଏ ନାଗ ଥିଲା । ପୁଷ୍କରିଣୀରେ ଖୁଭ ଦେଲା ବେଳେ ନାଗ ମୁଣ୍ଡରେ ହତଆର ବାଜି ରକ୍ତ ବୋହିଲା । ପୁଷ୍କରିଣୀ ଓ ସଂଘାରାମ ହେଲା ଦିନଠାରୁ ଏହି ନାଗର ନାମାନୁସାରେ ବିହାରର ନାମ ହେଲା ନାଳନ୍ଦ । ଏହି ନାଳନ୍ଦବିହାରର ସ୍ଥାପୟିତା ଶକ୍ରାଦିତ୍ୟଙ୍କୁ କେହି କେହି ଐତିହାସିକ ଗୁପ୍ତବଂଶର ସମ୍ରାଟ୍ କୁମାରଗୁପ୍ତ ବୋଲି ମନେ କରନ୍ତି ।

ନାଲନ୍ଦ-ବିଶ୍ୱବିଦ୍ୟାଳୟର ସ୍ଥାପୟିତା କିଏ—ଏ ସମ୍ବନ୍ଧରେ ନାନା ପଣ୍ଡିତଙ୍କର ନାନା ମତ ଦେଖାଯାଏ । ଚୈନିକ ପରିବ୍ରାଜକ ସୁପ୍ରସିଦ୍ଧ ହୁଏନସାଂ ଖ୍ରୀଷ୍ଟ ସପ୍ତମ ଶତାବ୍ଦୀରେ ଏହି ନାଲନ୍ଦ-ବିଶ୍ୱବିଦ୍ୟାଳୟରେ ଅଧ୍ୟୟନ କରିଥିଲେ । ହୁଏନସାଂଙ୍କ ବର୍ଣ୍ଣିତ ନାଲନ୍ଦ-ବିବରଣରୁ ଜଣାଯାଏ ସେତେବେଳେ ଏହି ବିଶ୍ୱବିଦ୍ୟାଳୟ ସମସ୍ତ ଏସିଆ ମହାଦେଶରେ ସୁଖ୍ୟାତି ଅର୍ଜ୍ଜନ କରିଥିଲା । ସୁତରାଂ ସପ୍ତମ ଶତାବ୍ଦୀର ବହୁପୂର୍ବରୁ ନାଲନ୍ଦ-ବିଶ୍ୱବିଦ୍ୟାଳୟ ପ୍ରତିଷ୍ଠିତ ହୋଇଥିଲା ଏହା ନିଃସନ୍ଦେହଭାବରେ କୁହାଯାଇପାରେ । ଶକ୍ରାଦିତ୍ୟ ନାମକ ଜଣେ ରାଜା ଖ୍ରୀଷ୍ଟପୂର୍ବ ପ୍ରଥମ ଶତାବ୍ଦୀରେ ଏହି ନାଲନ୍ଦ ବିଶ୍ୱବିଦ୍ୟାଳୟ ସ୍ଥାପନ କରିଥିଲେ * । କିନ୍ତୁ ନାଲନ୍ଦର ସୁପ୍ରକାଣ୍ଡ ଓ ବିରାଟ ଶିକ୍ଷା-ମନ୍ଦିର କେବଳ ଶକ୍ରାଦିତ୍ୟ ନାମକ ଜଣେ ରାଜାଙ୍କଦ୍ୱାରା ନିର୍ମ୍ମିତ ହୋଇ ନ ଥିଲା । ଯେପରି ଓଡ଼ିଶାର ପ୍ରାଚୀନ ଦେବମନ୍ଦିର ସବୁ ଜଣେ ଜଣେ ନିର୍ଦ୍ଦିଷ୍ଟ ରାଜାଙ୍କର ରାଜତ୍ୱକାଳରେ ନିର୍ମ୍ମିତ ନ ହୋଇପାରି ଦୁଇ କିମ୍ବା ତତୋଽଧିକ ରାଜାଙ୍କ ରାଜତ୍ୱକାଳରେ ସେମାନଙ୍କର ନିର୍ମ୍ମାଣକାର୍ଯ୍ୟ ଶେଷ ହୋଇଥିଲା, ସେହିପରି ନାଲନ୍ଦ-ବିଶ୍ୱବିଦ୍ୟାଳୟର ନିର୍ମ୍ମାଣକାର୍ଯ୍ୟ ଚାରିଜଣ ରାଜାଙ୍କର ଅକ୍ଲାନ୍ତପରିଶ୍ରମ ଓ ବିପୁଳ ଅର୍ଥ-ବ୍ୟୟରେ ନିର୍ମ୍ମିତ ହୋଇଥିଲା † । କଥିତ ଅଛି ଶକ୍ରାଦିତ୍ୟ, ବୁଦ୍ଧଗୁପ୍ତ, ତଥାଗତଗୁପ୍ତ ଏବଂ ବାଲାଦିତ୍ୟ ନାମକ ଚାରି ଜଣ ପ୍ରବଳପରାକ୍ରାନ୍ତ

* "An Ancient Indian University, Vaswani—The Ravenshavian—Vol. IV-No 1.

† "The Modern Review"—October 1911, p. 324.

ନରପତି ନାଳନ୍ଦ-ବିଶ୍ୱବିଦ୍ୟାଳୟର ପ୍ରତିଷ୍ଠା * । ଏଥିରେ ଐତିହାସିକ ସତ୍ୟ ଯେତେ ଥାଉ ପଛକେ ଦୃଢ଼ତା ସହିତ କୁହାଯାଇ ପାରେ ନାଳନ୍ଦ ବିଶ୍ୱବିଦ୍ୟାଳୟର ଐତିହାସିକ ଯୁଗର ଆରମ୍ଭ ଗୁପ୍ତବଂଶୀୟ ସମ୍ରାଟ୍ ନରସିଂହ ବାଳାଦିତ୍ୟଙ୍କର ରାଜତ୍ୱ ସମୟରୁ । ପୁରୁଗୁପ୍ତଙ୍କର ପୁତ୍ର ବାଳାଦିତ୍ୟ ୪୮୫ ଖ୍ରୀଷ୍ଟାବ୍ଦରେ ସିଂହାସନରେ ବସିଥିଲେ । ବାଳାଦିତ୍ୟ ନାଳନ୍ଦରେ ୩୦୦ ଫୁଟ ଉଚ୍ଚତାବିଶିଷ୍ଟ ଗୋଟିଏ ବୌଦ୍ଧ ଶିକ୍ଷା-ମନ୍ଦିର ନିର୍ମାଣ କରି ବୌଦ୍ଧଧର୍ମ ପ୍ରତି ତାଙ୍କର ପ୍ରଗାଢ଼ ଅନୁରାଗର ପରିଚୟ ଦେଇଥିଲେ † । ଏହି ଭାସ୍କର୍ଯ୍ୟମଣ୍ଡିତ ନାନାରତ୍ନଖଚିତ ବିଶ୍ୱବିଦ୍ୟାଳୟ ଦେଖି ହୁଏନସାଂ ବିସ୍ମିତ ଓ ମୁଗ୍ଧ ହୋଇଥିଲେ । ବାଳାଦିତ୍ୟଙ୍କର ବହୁକାଳ ପୂର୍ବରୁ ନାଳନ୍ଦ-ବିଶ୍ୱବିଦ୍ୟାଳୟର

---

* "Education in Ancient India"—Majumdar, p. 93.

† "Purugupta (ପୁରୁଗୁପ୍ତ) was succeeded, about A. D. 485, by his son, Narasinghagupta Baladitya, who gave public proof of his partiality for Buddhism by building at Nalanda, in Magadha, the principal seat of Buddhist learning in Northern India, a brick temple more than 300 ft. high, according to Hiuen Tsang, which was remarkable for the delicacy of its decorations and the lavish use of gold and gem in its furniture"—The Early History of India, V. A. Smith, p. 312.

ସୁଖ୍ୟାତ ହେଲା, ସେ କେବଳ ଗୋଟିଏ ସୁନ୍ଦର, ବହୁ ବ୍ୟୟସାଧ୍ୟ ଉତ୍କୃଷ୍ଟନିର୍ମିତ ସୌଧ ନିର୍ମାଣ କରି ବିହାରର ସୌନ୍ଦର୍ଯ୍ୟ, ଗୌରବ ଓ ଖ୍ୟାତି ବର୍ଦ୍ଧନ କରିଥିଲେ । ଚୈନିକ ପରିବ୍ରାଜକ ହୁଏନସାଂ ହର୍ଷବର୍ଦ୍ଧନଙ୍କ ରାଜତ୍ୱରେ ଭାରତକୁ ଆସିଥିଲେ ଏବଂ ନାଳନ୍ଦ-ବିଶ୍ୱବିଦ୍ୟାଳୟରେ ସେ ଦୁଇ ଥର ବିଦ୍ୟାଧ୍ୟୟନ କରିଥିବାର ସେ ନିଜେ ତାଙ୍କ ବର୍ଣ୍ଣିତ ଭାରତ-ବିବରଣୀରେ ଲେଖିଅଛନ୍ତି । ଏହି ବିଶ୍ୱବିଦ୍ୟାଳୟ ସମ୍ବନ୍ଧରେ ସେ ନିଜେ କହନ୍ତି :—

"ଜଣଙ୍କ ପରେ ଜଣେ ଏହିପରି କେତେ ଜଣ ରାଜାଙ୍କ ଦ୍ୱାରା ନିର୍ମିତ ନାଳନ୍ଦ ଶିକ୍ଷା-ମନ୍ଦିରର ନିର୍ମାଣ-କୌଶଳ ଏବଂ କାରୁକାର୍ଯ୍ୟ ଅତ୍ୟନ୍ତ ରମଣୀୟ ଥିଲା । ଏହି ଅନୁଷ୍ଠାନରେ ପ୍ରାୟ ସହସ୍ର ବୌଦ୍ଧ ସନ୍ନ୍ୟାସୀ ବାସ କରୁଥିଲେ । ଏହି ବୌଦ୍ଧ ସନ୍ନ୍ୟାସୀମାନେ ଅତ୍ୟନ୍ତ ବିଦ୍ୟାନୁରାଗୀ, ବିଚକ୍ଷଣ ଓ ସୁଚତୁର ଲୋକ ଥିଲେ । ସମଗ୍ର ଭାରତରେ ଏମାନଙ୍କର ଆଦର ଓ ପ୍ରତିଷ୍ଠା ଥିଲା । ବିଦ୍ୟାଚର୍ଚ୍ଚା ଓ ତର୍କ-ବିତର୍କରେ ସେମାନଙ୍କର ସମସ୍ତ ସମୟ ବ୍ୟୟିତ ହେଉଥିଲା । ବୌଦ୍ଧଧର୍ମର ନୀତି ଏଠାରେ ବିଶଦଭାବରେ ଆଲୋଚିତ ହେଉଥିଲା । ବୈଦେଶିକମାନେ ବୌଦ୍ଧଦର୍ଶନ ସମ୍ବନ୍ଧରେ ସେମାନଙ୍କର ସନ୍ଦେହ ନିରାକରଣ କରିବା ନିମନ୍ତେ ନାଳନ୍ଦକୁ ଆସୁଥିଲେ । ସନ୍ଦେହ ଦୂର ହେଲେ ସେମାନେ ବୌଦ୍ଧଧର୍ମରେ ଦୀକ୍ଷିତ ହୋଇ ଏଠାରେ ଶିକ୍ଷାଂଶ ଗ୍ରହଣ କରୁଥିଲେ । ଏହି ଅନୁଷ୍ଠାନରେ ପ୍ରବେଶ କରିବା ବୈଦେଶିକମାନଙ୍କ ପକ୍ଷରେ ବଡ଼ କଠିନ ବ୍ୟାପାର ଥିଲା । ଯେଉଁ ବିଦ୍ୟାର୍ଥୀମାନେ କେବଳ ପ୍ରାଚୀନ ଓ ନୂତନ ଧରଣର ବିଦ୍ୟା ଆଲୋଚନା କରିବାକୁ ସମର୍ଥ ହେଉଥିଲେ, ସେହିମାନେ କେବଳ ବିଶ୍ୱବିଦ୍ୟାଳୟରେ ପ୍ରବେଶ ଲାଭ କରିପାରୁଥିଲେ ଏବଂ ଦଶ ଜଣ ବୈଦେଶିକମାନଙ୍କ ମଧ୍ୟରୁ

ବେଳେ ଦୁଇ କିମ୍ବା ତିନି ଜଣ ଏଠାରେ ଶିଷ୍ୟତ୍ୱ ଗ୍ରହଣ କରି ପାରୁଥିଲେ * ।"

ଉତ୍ତୁଙ୍ଗ ସୌଧର ମଧ୍ୟଭାଗରେ ବିଶ୍ୱବିଦ୍ୟାଳୟର ପ୍ରଧାନ ଶିକ୍ଷା-ମନ୍ଦିର ଅବସ୍ଥିତ ଥିଲା । ଛାତ୍ରମାନଙ୍କୁ ଶିକ୍ଷା ଦେବା ନିମନ୍ତେ ଅନେକ ହଲ୍ ଏବଂ ପ୍ରାୟ ଶତାଧିକ ପର୍ଯ୍ୟନ୍ତ ପ୍ଲାଟ୍‌ଫର୍ମ ଥିଲା । ଏହି ବିଶ୍ୱବିଦ୍ୟାଳୟ ମଧ୍ୟରେ ଅଧ୍ୟାପକମାନେ ଛାତ୍ରମାନଙ୍କ ସହିତ ବାସ କରୁଥିଲେ । ଏଠାରେ ସାମ୍ପ୍ରଦାୟିକ ଭେଦଭାବ ଓ ସଙ୍କୀର୍ଣ୍ଣତା ଆଦୌ ନ ଥିଲା । ବୈଦେଶିକମାନେ ଅଧ୍ୟାପକ କାର୍ଯ୍ୟରେ ନିଯୁକ୍ତ ହୋଇ ପାରୁଥିଲେ † । 'ରତ୍ନସାଗର', 'ରତ୍ନୋଦଧି' ଓ 'ରତ୍ନରଞ୍ଜକ' ନାମକ ତିନୋଟି ପ୍ରଧାନ ଓ ସୁରମ୍ୟ ଗୃହ ଏହି ବିଶ୍ୱବିଦ୍ୟାଳୟ ମଧ୍ୟରେ ଥିଲା । 'ରତ୍ନୋଦଧି' ନବତଳ ପ୍ରାସାଦ-ବିଶିଷ୍ଟ ଗୋଟିଏ ଉତ୍ତୁଙ୍ଗ ସୌଧ ଥିଲା । ଏହିଠାରେ ତତ୍କାଳୀନ ଭାରତର ସର୍ବପ୍ରଧାନ ପୁସ୍ତକାଗାର ରଖାଯାଇଥିଲା ‡ । ବୌଦ୍ଧଧର୍ମର ଅବସାନ ସଙ୍ଗେ ସଙ୍ଗେ ଏହି 'ରତ୍ନୋଦଧି' ପୁସ୍ତକାଳୟ ଭସ୍ମସାତ୍ ହେଲା । ହୁଏନ୍‌ସାଂ ନାଳନ୍ଦାରେ ଅଧ୍ୟୟନ କରୁଥିବା ବେଳେ ବିଶ୍ୱବିଦ୍ୟାଳୟର କୁଳପତି ଥିଲେ ଶୀଳଭଦ୍ର ।

* Hiuen Tsang's Travels, translated by T. Walters, Vol. II, p. 165 (Modern Review, Oct. 1911.

† "× × the University was not sectarian, and even tho teaching staff included 'strangers' —Principal Viswani"

‡ Education in Ancient India—Majumdar, p. 93.

ଆଧୁନିକ ଭାରତ ଦେଶୀୟ ବିଦ୍ୟାଳୟମାନଙ୍କ ପରି ନାଳନ୍ଦ ଗୋଟିଏ ବୌଦ୍ଧବିହାର କିମ୍ବା ମଠ ଥିଲା । ଚୀନ, ତିବ୍ବତ, ମଧ୍ୟଏସିଆ, ବୋଖରା, କୋରିଆ ଓ ଏସିଆ ମହାଦେଶର ଅନ୍ୟାନ୍ୟ ସ୍ଥାନରୁ ଛାତ୍ରମାନେ ବହୁ ସଂଖ୍ୟାରେ ଆସି ଏଠାରେ ଅଧ୍ୟୟନ କରୁଥିଲେ । ଛାତ୍ରମାନଙ୍କର ଗ୍ରାସ, ଆଚ୍ଛାଦନ ଓ ଅନ୍ୟାନ୍ୟ ବ୍ୟୟ ନିମନ୍ତେ ରାଜାମାନେ ଜମି ଓ ଗ୍ରାମ ଖଞ୍ଜି ଦେଉଥିଲେ । ଏହି ଗ୍ରାମର ସମସ୍ତ ଆୟ ବିଶ୍ୱବିଦ୍ୟାଳୟର ଛାତ୍ରମାନଙ୍କ ନିମନ୍ତେ ବ୍ୟୟିତ ହେଉଥିଲା * ।

ତକ୍ଷଶିଳା ବିଶ୍ୱବିଦ୍ୟାଳୟ ପରି ନାଳନ୍ଦରେ ଆଧ୍ୟାତ୍ମିକ, ନୈତିକ ଓ ବୈଷୟିକ ସମସ୍ତ ପ୍ରକାର ବିଷୟରେ ଶିକ୍ଷାଦେବାର ବ୍ୟବସ୍ଥା ଥିଲା । କିନ୍ତୁ ତକ୍ଷଶିଳାରେ ଯେପରି ନାନା ପ୍ରକାର ହସ୍ତକର୍ମ, ଅସ୍ତ୍ର-ଶିକ୍ଷା, ନାନାପ୍ରକାର କାରୁକାର୍ଯ୍ୟ ଓ ଚିକିତ୍ସାଶାସ୍ତ୍ରର ଆଲୋଚନା ହେଉଥିଲା, ନାଳନ୍ଦରେ ଅବଶ୍ୟ ସେପରି ନ ଥିଲା । କାରଣ ନାଳନ୍ଦର ଅଧିକାଂଶ ବିଦ୍ୟାର୍ଥୀ ଥିଲେ ବୌଦ୍ଧ ସନ୍ନ୍ୟାସୀ । କେବଳ ଆଧ୍ୟାତ୍ମିକ ବିଷୟ ବ୍ୟତୀତ ଅନ୍ୟାନ୍ୟ ବୈଷୟିକ ବିଷୟ ଶିକ୍ଷା କରିବାର ପ୍ରୟୋଜନୀୟତା ସେମାନଙ୍କର ନ ଥିବାରୁ ବୈଷୟିକ ଶିକ୍ଷା ଉପରେ ନାଳନ୍ଦ ସେତେ ଗୁରୁତ୍ୱ ଦେଉ ନ ଥିଲା । ତଥାପି କୃଷି ଓ ବାଣିଜ୍ୟ ସମ୍ବନ୍ଧରେ ଛାତ୍ରମାନଙ୍କୁ ସ୍ଥୂଳ ଜ୍ଞାନ ଦିଆ ଯାଉଥିଲା । ଏଠାରେ ବ୍ୟାକରଣ, ନ୍ୟାୟ, ଚିକିତ୍ସାଶାସ୍ତ୍ର, ଦର୍ଶନ ଓ ଅର୍ଥଶାସ୍ତ୍ର ପ୍ରଭୃତିର

---

*"The land in the possession of the Nalanda monastery contained more than 200 villages. They were bestowed upon it by kings of many generations" Dacca Review. Vol. 5, No. 1 April, 1915, p. 11.

ଆଲୋଚନା ହେଉଥିଲା । ସଂସ୍କୃତ ଓ ପାଲିଭାଷା ମଧ୍ୟ ଶିକ୍ଷା ଦେବାର ବ୍ୟବସ୍ଥା ଥିଲା । ନ୍ୟାୟଶାସ୍ତ୍ରର ଆଲୋଚନା ନାଲନ୍ଦ ବିଶ୍ୱବିଦ୍ୟାଳୟର ବୈଶିଷ୍ଟ୍ୟ ଥିଲା । ପ୍ରତ୍ୟେକ ବିଭାଗ ପାଇଁ ଜଣେ ଜଣେ ଅଧ୍ୟାପକ ନିଯୁକ୍ତ ଥିଲେ ।

ପ୍ରତ୍ୟେକ ବିଷୟରେ ଅଧ୍ୟାପନାର ଭାର ଅନେକ ଅଧ୍ୟାପକମାନଙ୍କ ଉପରେ ନ୍ୟସ୍ତ ଥିବାରୁ ପ୍ରତ୍ୟେକ ବିଭାଗରେ ଛାତ୍ର ଓ ବିଦ୍ୟାର୍ଥୀମାନେ ଧୂରନ୍ଧର ହୋଇ ବାହାରୁଥିଲେ । ଯାହାର ଯେଉଁ ଦିଗରେ ରୁଚି ଓ ଅନୁରାଗ ଥିଲା, ସେ ସେହି ବିଷୟରେ ଶିକ୍ଷା ପାଉଥିଲା । ଯେଉଁ ବୌଦ୍ଧ ସନ୍ନ୍ୟାସୀମାନେ ଜ୍ଞାନର ଗମ୍ଭୀରତା, ଚରିତ୍ରର ଅଧୃଷ୍ୟ, ବୁଦ୍ଧିର ତୀକ୍ଷ୍ଣତା ଓ ପ୍ରବୀଣତା ଯୋଗୁଁ ପ୍ରସିଦ୍ଧି ଲାଭ କରିଥିଲେ, ସେହିମାନେ କେବଳ ଏହି ବିଶ୍ୱବିଦ୍ୟାଳୟର ଅଧ୍ୟାପକ ନିଯୁକ୍ତ ହୋଇପାରୁଥିଲେ । ପ୍ରାୟ ଏକ ସହସ୍ର ବର୍ଷ ପର୍ଯ୍ୟନ୍ତ ନାଲନ୍ଦ-ବିଶ୍ୱବିଦ୍ୟାଳୟ ସମଗ୍ର ଭାରତଭୂମିର ଗୌରବର ସାମଗ୍ରୀ, ଜ୍ଞାନଚର୍ଚ୍ଚାର କେନ୍ଦ୍ର, ପଣ୍ଡିତମାନଙ୍କର ଆଶ୍ରୟସ୍ଥଳୀ ଥାଇ ଦେଶ ବିଦେଶରେ ଭାରତୀୟ ସଭ୍ୟତା ଓ ସଂସ୍କୃତିର ଶୁଭ୍ର ଆଲୋକ ବିକୀରଣ କରୁଥିଲା * ।

ଏତେ ବଡ଼ ସୁପ୍ରକାଣ୍ଡ ଶିକ୍ଷା-କେନ୍ଦ୍ରର ଧ୍ୱଂସ କେତେବେଳେ କାହିଁକି ହେଲା, ତାହା ଏ ପର୍ଯ୍ୟନ୍ତ ଐତିହାସିକ ପଣ୍ଡିତମାନେ ସ୍ଥିର ନ କରିଥିଲେ ସୁଦ୍ଧା ଏହା ଧ୍ରୁବ ସତ୍ୟ ଯେ ବୌଦ୍ଧଧର୍ମର ଅବନତି ସାଙ୍ଗେ ସାଙ୍ଗେ ଏବଂ ମୁସଲମାନ୍‌ମାନଙ୍କର ଭାରତ-ଆକ୍ରମଣର ଅବ୍ୟ-

* "It flourished between the 1st century B. C. and 8th century A. D."—Sarat Chandra Das—Universities in Ancient India.

ବହୁତ ପରେ ଖୃଷ୍ଟପଞ୍ଚଶତକଠା ଅଗ୍ରବନ୍ତୁ ନାଳନ୍ଦର ପତନାରମ୍ଭ ହେଲା । ନାଳନ୍ଦର ଗୌରବ-ରବି ଅସ୍ତମିତ ହେବାକୁ ବସିଲା । ଭାରତର ମୌଳିକ ଓ ଜାତୀୟ ସଭ୍ୟତାର ମେରୁଦଣ୍ଡ ଭାଙ୍ଗି ପଡ଼ିଲା । ବର୍ତ୍ତମାନ ସରକାରଙ୍କ ବ୍ୟୟ ଓ ଯତ୍ନରେ ଭୂଗର୍ଭରୁ ନାଳନ୍ଦ-ବିଶ୍ୱବିଦ୍ୟାଳୟର ଯେଉଁ ଭଗ୍ନାବଶେଷ ବାହାରୁଛି, ସେଥିରୁ ୩୦ ଓ ୩୨ ହାତ ଉଚ୍ଚ କାନ୍ଥମାନ ଅଦ୍ୟାପି ଠିଆ ହୋଇଥିବାର ଜଣାଯାଉଅଛି । ଭୂଗର୍ଭରୁ ପ୍ରକାଣ୍ଡ ସ୍ତୂପ ଓ ବୁଦ୍ଧ-ମୂର୍ତ୍ତି ବାହାର ଅଛି । ଛାତ୍ର ଓ ସନ୍ନ୍ୟାସୀମାନଙ୍କର ରହିବାର ସୁନ୍ଦର ସୁନ୍ଦର କୋଠରୀମାନ ମଧ୍ୟ ବାହାରୁଅଛି । ଶତ ଶତ ଛାତ୍ର ଉପବେଶନ କରି ପାରିବା ଭଳି ପ୍ରାଙ୍ଗଣମାନ ବାହାରୁଅଛି । ନାଳନ୍ଦର ଇତିହାସ ଏଯାବତ୍ ସମ୍ପୂର୍ଣ୍ଣ ଜଣାଯାଇ ନାହିଁ । ଭୂଗର୍ଭରେ ନାଳନ୍ଦ-ବିଶ୍ୱବିଦ୍ୟାଳୟର କେତେ ତଥ୍ୟ ଯେ ନିହିତ ଅଛି ତାହା କିଏ କହିପାରେ ?

ନାଳନ୍ଦ ଛଡ଼ା ବିଦର୍ଭ ( ଆଧୁନିକ ବେରାର ), କାଂଚି ଓ ଉତ୍କଳ ଜିଲ୍ଲାର ଉଦୟଗିରି ନିକଟରେ ଥିବା ପୁଷ୍ପଗିରି ବିଶ୍ୱ-ବିଦ୍ୟାଳୟରେ ସହସ୍ର ସହସ୍ର ବିଦ୍ୟାର୍ଥୀ ଅଧ୍ୟୟନ କରୁଥିଲେ । ପୁଷ୍ପଗିରିରେ ମଧ୍ୟ ହୁଏନସାଂ ନିଜେ କେତେକାଳ ଅଧ୍ୟୟନ କରିଥିଲେ ବୋଲି ପଣ୍ଡିତମାନଙ୍କର ମତ । ପୁଷ୍ପଗିରି ଭୂଗର୍ଭର ଖୋଦନକାର୍ଯ୍ୟ ସରକାର ଆରମ୍ଭ କରିବେ ବୋଲି ଶୁଣାଯାଏ । ପୁଷ୍ପଗିରିରୁ ଅନେକ ବୌଦ୍ଧ ଓ ଜୈନ ଧ୍ୱଂସାବଶେଷ ମିଳିବାର ସମ୍ଭାବନା * ।

ପୂର୍ବରୁ କୁହା ଯାଇଅଛି ବୈଦେଶିକାଗତମାନଙ୍କଠାରୁ ପ୍ରାଚୀନ ଭାରତର ଶିକ୍ଷା-ପ୍ରଣାଳୀ ସମ୍ବନ୍ଧରେ ଅନେକ ତଥ୍ୟ ମିଳେ ।

---

* "ନବଭାରତ" ମକର, ୧୩୪୨, ପୃ ୬୨୭

ବିଶେଷତଃ ତକ୍ଷଶିଳା ବିଶ୍ୱବିଦ୍ୟାଳୟର ଶିକ୍ଷା-ପ୍ରଣାଳୀ, ପାଠ୍ୟ-ପୁସ୍ତକ, ଅଧ୍ୟାପନାର ଆଦର୍ଶ, ନୀତି ଓ ସମୟ ସମ୍ବନ୍ଧରେ ଜାତକମାନଙ୍କରେ ଅବାନ୍ତର ଭାବରେ ଏତେ କଥାର ଉଲ୍ଲେଖ ଅଛି ଯେ ସେସବୁ ପାଠ କଲେ ଆନନ୍ଦ ଓ ବିସ୍ମୟରେ ମନ ଅଧୀର ହୋଇ ଉଠେ । ତକ୍ଷଶିଳା-ବିଶ୍ୱବିଦ୍ୟାଳୟର ବିଦ୍ୟାର୍ଥୀମାନଙ୍କୁ ବେତନ ଦେବାକୁ ପଡ଼ୁଥିଲା । ବିଶ୍ୱବିଦ୍ୟାଳୟରେ ପ୍ରବେଶ କରିବା ପୂର୍ବରୁ ଏ ବେତନ ଆଦାୟ କରା ଯାଉଥିଲା । କୌଣସି କୌଣସି ଛାତ୍ର ଶିକ୍ଷାର ସମାପ୍ତି ପରେ ଅଧ୍ୟାପକଙ୍କୁ ଦେବା ନିମନ୍ତେ ସ୍ୱର୍ଣ୍ଣମୁଦ୍ରା ସଂଗ୍ରହ କରୁଥିବା କଥା କୌଣସି କୌଣସି ଜାତକରେ ଲେଖାଅଛି * । ବେତନ ସବୁ ସ୍ୱର୍ଣ୍ଣମୁଦ୍ରାରେ ଦିଆ ଯାଉଥିଲା ।

ବିଦ୍ୟାର୍ଥୀମାନେ ଶିକ୍ଷା ସମାପ୍ତ କରି ବିବାହ କରୁଥିଲେ । କିନ୍ତୁ କୌଣସି କୌଣସି ବୌଦ୍ଧ ଜାତକରେ ଉଲ୍ଲେଖ ଅଛି †, କେତେ କେତେ ଛାତ୍ର ବିବାହ ପରେ ମଧ୍ୟ ଅଧ୍ୟୟନ କରୁଥିଲେ । ଗୋଟିଏ ଛାତ୍ର ତାହାର ସ୍ତ୍ରୀର କୁପରାମର୍ଶ ଓ ପ୍ରଭାବରେ ପଢ଼ ଘର ଶ୍ରେଣୀରୁ ଅନେକ ଦିନ ପର୍ଯ୍ୟନ୍ତ ଅନୁପସ୍ଥିତ ରହୁଥିଲା, ତାହାର ପ୍ରମାଣ ମଧ୍ୟ ଜାତକରୁ ମିଳେ । କୌଣସି କୌଣସି ଅଧ୍ୟାପକ ମଧ୍ୟ ଛାତ୍ରମାନଙ୍କ ଚରିତ୍ରର ବିଶୁଦ୍ଧତା ପରୀକ୍ଷା କରି ସେମାନଙ୍କ ମଧ୍ୟରୁ ଯାହାର ଯାହାର ହସ୍ତରେ ନିଜର କନ୍ୟାଙ୍କୁ ସମର୍ପଣ କରୁଥିଲେ ‡ । ତକ୍ଷଶିଳା ବିଶ୍ୱବିଦ୍ୟାଳୟରେ ଦରିଦ୍ର ଓ ଧନୀ ବିଦ୍ୟାର୍ଥୀମାନଙ୍କ ମଧ୍ୟରେ କୌଣସି ପାର୍ଥକ୍ୟ ନ ଥିଲା । ଅଧ୍ୟାପକମାନେ ସମସ୍ତଙ୍କ ପ୍ରତି

---

* The Duta Jataka (Vol. IV, 478)

† Anabhirati Jataka (Vol. I, 65 )

‡ The Silvimamsana Jataka (Vol. I, 65 )

ସମାନ ବ୍ୟବହାର ଦେଖାଉଥିଲେ । ଛାତ୍ରମାନଙ୍କ ପାଖରେ ପାଦୁକାଟାଏ ସୁଦ୍ଧା ନ ଥାଏ । ସବୁ ଅର୍ଥ ଗଚ୍ଛିତ ଥାଏ ଅଧ୍ୟାପକଙ୍କ ନିକଟରେ । 'ଜୁନା' ଜାତକରେ ଉଲ୍ଲେଖ ଅଛି ବେନାରସର ଯୁବରାଜ 'ଜୁନା' ଅଧ୍ୟାପକଙ୍କଠାରୁ ବିଦ୍ୟାଶିକ୍ଷା କରି ଘୋର ଅନ୍ଧକାର ସମୟରେ ନିଜର କୋଠରୀକୁ ଫେରି ଯାଉଥିଲେ । ଅଜ୍ଞାନତା-ବଶତଃ ସେ ଜଣେ ବ୍ରାହ୍ମଣ ବିଦ୍ୟାର୍ଥୀ ଉପରେ ପଡ଼ିଯିବାରୁ ତାହାର ଭିକ୍ଷା-ପାତ୍ରଟି ଭାଙ୍ଗିଗଲା । ବିଦ୍ୟାର୍ଥୀ କହିଲେ, "ମୋ ଭିକ୍ଷା ପାତ୍ରର ମୂଲ୍ୟ ଦିଅ ।" ଜୁନା ଉତ୍ତରରେ କହିଲେ, "ମୋ ନିକଟରେ ବର୍ତ୍ତମାନ ଗୋଟିଏ ସୁଦ୍ଧା କପର୍ଦ୍ଦକ ନାହିଁ । ମୁଁ ରାଜକୁମାର 'ଜୁନା' । ରାଜଧାନୀକୁ ଫେରିଗଲେ ମୋ ସହିତ ଦୟାକରି ଦେଖା କରିବ ।"

ଅଧ୍ୟାପକମାନଙ୍କର ତୀକ୍ଷ୍ଣ ଦୃଷ୍ଟି ଓ କଠୋର ଶାସନରୁ ଛାତ୍ରମାନଙ୍କର ମୁକ୍ତି ନ ଥିଲା । ଛାତ୍ରମାନେ ଏକାକୀ ନଦୀକୂଳକୁ ସ୍ନାନ କରିବାକୁ ଯିବାକୁ ଅନୁମତି ପାଉ ନ ଥିଲେ * । ଥରେ ଗୋଟିଏ ଛାତ୍ର ସ୍ନାନ କରିବାକୁ ଗଲାବେଳେ ଜଣେ ମିଠାଇବାଲାଠାରୁ ତାର ବିନାନୁମତିରେ ଗୋଟିଏ ମିଠାଇ ନେଇ ଯାଇଥିବାରୁ ଅଧ୍ୟାପକ କ୍ରୋଧରେ ଅଧୀର ହୋଇ ଦୁଇଜଣ ଛାତ୍ରଙ୍କୁ ଆଦେଶ ଦେଲେ— "ଏହି ଦୁଷ୍ଟ ଛାତ୍ରର ଦୁଇହାତ ଜୋରରେ ଧର ।" ତା ପରେ ସେହି ଅଧ୍ୟାପକ ତାକୁ ନିର୍ମମ ଭାବରେ ପ୍ରହାର କରିବାକୁ ଲାଗିଲେ † । କେବଳ ପାଠ୍ୟପୁସ୍ତକ କଣ୍ଠସ୍ଥ କଲେ ଦୃଷ୍ଟିର ପ୍ରସାର ହୁଏ ନାହିଁ, ଜ୍ଞାନ ପରିମାର୍ଜିତ ହୁଏ ନାହିଁ, ବୁଦ୍ଧି ପରିପକ୍ୱ ହୁଏ ନାହିଁ ବୋଲି

* Reference to education in the Jatakas; J. B. O. R. S. Vol. IV-II, p. 154.

† The Tillamutthi Jataka (Vol II, 252)

ଦେଶ ଭ୍ରମଣ ମଧ୍ୟ ତାଙ୍କଦରେ ଶିକ୍ଷାର ପ୍ରଧାନ ଅଙ୍ଗ ଥିଲା *।
ଏସବୁ କଥା ପଢ଼ ଐତିହାସିକ ସତ୍ୟ ବୋଲି ଧରାଯାଏ ତେବେ
ଯେଉଁମାନେ ମତ ଦିଅନ୍ତି, ଇଂରେଜମାନଙ୍କର ଆଗମନ ପୂର୍ବରୁ
ଭାରତରେ ଶିକ୍ଷା ଓ ସଭ୍ୟତା ନ ଥିଲା, ସେମାନେ ଭାରତ-ଇତିହାସ
ସମ୍ବନ୍ଧରେ ସମ୍ପୂର୍ଣ୍ଣ ଅନଭିଜ୍ଞ ଓ 'ସର୍ପ ସମାନ ଭୟଙ୍କର'; ସୁତରାଂ
ଦୂରରୁ ପରିହାର୍ଯ୍ୟ ।

---

## ପ୍ରାଚୀନ ଭାରତର ରାଜା ଓ ରାଜତନ୍ତ୍ର

ଅନେକଙ୍କର ଭ୍ରାନ୍ତ ଧାରଣା ପ୍ରାଚୀନ ଭାରତର ହିନ୍ଦୁରାଜତ୍ବ
କାଳରେ ରାଜାମାନେ ଯଥେଚ୍ଛାଚାରୀ ଶାସକ ଥିଲେ । ଇଂଲଣ୍ଡ-
ଇତିହାସରେ ଖ୍ରୀଷ୍ଟ ଷୋଡ଼ଶ ଶତାବ୍ଦୀର ଷ୍ଟୁଅର୍ଟ୍ ବଂଶୀୟ ପ୍ରଥମ ଜେମ୍ସ
ଓ ପ୍ରଥମ ଚାର୍ଲସଙ୍କ ପରି ହିନ୍ଦୁରାଜାମାନେ ଥିଲେ "ମନୁଷ୍ୟ ଦେହରେ
ଦେବତା ନରରୂପେଣ ତିଷ୍ଠତି ।" ବିଷ୍ଣୁଙ୍କର କଳା ଯେପରି ରାଜାମାନେ
ଜନ୍ମ ହେଉଥିଲେ । ସୁତରାଂ "ବାଲୋଽପି ନାବମନ୍ତବ୍ୟୋ"—ରାଜା
ବାଳକ ହେଲେ ସୁଦ୍ଧା ଦେବତାଙ୍କ ପରି ପୂଜ୍ୟ । ରାଜାଙ୍କର ପ୍ରଜା-
ପୀଡ଼ନ ଓ ଅତ୍ୟାଚାର ବିରୁଦ୍ଧରେ କନିଷ୍ଠ ଅଙ୍ଗୁଳିଟି ସୁଦ୍ଧା ଉତ୍ତୋଳନ
କରିବାର ଶକ୍ତି ସେତେବେଳେ ହିନ୍ଦୁ ପ୍ରଜାମାନଙ୍କର ନ ଥିଲା ।
କେତେକ ପଣ୍ଡିତଙ୍କର ମତ ସେକାଳରେ ହିନ୍ଦୁରାଜାମାନେ ଯେପରି
ମୂର୍ତ୍ତିମନ୍ତ ଅତ୍ୟାଚାରରୂପେ ଏ ସଂସାରରେ ଜନ୍ମ ହୋଇ କେବଳ
କଠୋର ଦଣ୍ଡନୀତିଦ୍ୱାରା ଦୁଷ୍ଟ ଦମନ ଓ ଶିଷ୍ଟ ପାଳନ କରୁଥିଲେ ।
ରାଜା ଥିଲେ ହିନ୍ଦୁମାନଙ୍କର "ଜଗନ୍ନାଥ" । ପ୍ରଜାମାନଙ୍କ ଚକ୍ଷୁରେ
ରାଜା ଥିଲେ "ବିଶ୍ୱେଶ୍ୱର", ସତ୍ୟ, ଧର୍ମ, କୁଳ, ମାତା, ପିତା ଓ

---

* The Setaketu Jataka (Vol. III, 377.)

ସ୍ୱର୍ଗ * । ରଜା ଯେ କୌଣସି ପ୍ରକାର ଅପକାର୍ଯ୍ୟ କଲେ ମଧ୍ୟ ସେ କ୍ଷମଣୀୟ †।

ଅବଶ୍ୟ ଏ ଭ୍ରାନ୍ତ ଧାରଣା ଯେ ସେ ପଣ୍ଡିତମାନଙ୍କର ନିତାନ୍ତ ଅମୂଳକ ଓ ଜ୍ଞାନହୀନ ଚିନ୍ତା ନୁହେ । ପ୍ରାଚୀନ-ଭାରତର ଶାସନ-ପଦ୍ଧତିର କିଛି ପ୍ରକାଶ ଆଲୋଚନା କଲେ ଦେଖାଯାଏ, ମନୁ ପ୍ରଭୃତି ପ୍ରାଚୀନ ବ୍ୟବସ୍ଥାଦାତା ଓ ଶାସ୍ତ୍ରକାରମାନେ ହିନ୍ଦୁ-ରଜାଙ୍କୁ ଏପରି ଭାବରେ ଗଠନ କରିଅଛନ୍ତି, ସେମାନଙ୍କୁ ଏତେ ଉଚ୍ଚ ଆସନ ଦେଇଅଛନ୍ତି ଓ ସେମାନଙ୍କୁ ସ୍ୱର୍ଗର ଦେବତାମାନଙ୍କ ସହିତ ଏପରି ସମାନ କରି ଦେଇ ଯାଇଅଛନ୍ତି ଯେ ଲୋକ ସାଧାରଣ ରଜାଙ୍କଠାରେ ଦେବତ୍ୱ ଆରୋପ କରି ସେମାନଙ୍କୁ ଦେବତା ଭାବରେ ପୂଜା କରିବାକୁ କଦାପି ଟଳେ ନାହିଁ କୁଣ୍ଠା ପ୍ରକାଶ କରି ନାହାନ୍ତି । ସୁତରାଂ ରଜା ଯେ ନରଦେହଧାରୀ ଗୋଟିଏ ଗୋଟିଏ ସ୍ୱର୍ଗର ଦେବତା ଏ ଧାରଣା ଆମ୍ଭମାନଙ୍କ ଦେଶର ଲୋକମାନଙ୍କ ହୃଦୟରେ ବଦ୍ଧମୂଳ ହୋଇଅଛି ଓ ସେହି ଧାରଣା ପଣ୍ଡିତ ଓ ଐତିହାସିକମାନଙ୍କର ଲେଖନୀରେ ପ୍ରତିବିମ୍ବିତ ଓ ପ୍ରତିଫଳିତ ହୋଇଅଛି ମାତ୍ର । ଏପରି କି 'ଯାଜ୍ଞବଲ୍କ୍ୟ ସଂହିତା'ରେ ଅଛି, ପ୍ରଜାମାନେ ଅରକ୍ଷ୍ୟମାଣ ହୋଇ ରାଜ୍ୟରେ ଯେଉଁ ଯେଉଁ ଅପରାଧମାନ କରନ୍ତି ସେ, ଅପରାଧମାନଙ୍କର ଅର୍ଦ୍ଧେକ ରଜାଙ୍କର । କାରଣ ସେ ପ୍ରଜାମାନଙ୍କଠାରୁ କର ଗ୍ରହଣ କରି ସେମାନଙ୍କୁ ପାଳନ କରନ୍ତି ‡ । ରାଜ୍ୟର କୃଷି ଓ ବାଣିଜ୍ୟର

---

* "ରଜା ସତ୍ୟଂଚ ଧର୍ମଂଚ ରଜା କୁଳବତାଂ କୁଳଂ
ରଜା ମାତା ପିତାଚୈବ ରଜାହିତକରୋ ନୃଣାମ୍"

† "ସର୍ବଥା ବର୍ତ୍ତମାନସ୍ୟ ରଜ୍ଞ କ୍ଷାନ୍ତବ୍ୟମେବ ହି"

‡ "ଅରକ୍ଷ୍ୟମାଣାଃ କୁର୍ବନ୍ତି ଯତ୍ କିଂଚିତ୍ କିଲ୍‌ବିଷଂ ପ୍ରଜାଃ
ତସ୍ମାତ୍ ନୃପତେରର୍ଦ୍ଧଂ ଯସ୍ମାତ୍ ଗୃହ୍ଣାତ୍ୟସୌ କରନ୍"

ଉନ୍ନତି ଏବଂ ସାଫଲ୍ୟ ରାଜାମାନଙ୍କର କର୍ତ୍ତବ୍ୟପରାୟଣତା ଉପରେ ନିର୍ଭର କରେ । ପ୍ରଜାମାନଙ୍କର ସୁଖ, ଦୁଃଖ, ସମ୍ପଦ, ବିପଦ, ପାପ, ପୁଣ୍ୟ, ଶାନ୍ତି ଓ ଅଶାନ୍ତି ପ୍ରଭୃତିର କାରଣ ସ୍ୱୟଂ ରାଜା । ରାଜ୍ୟରେ ଅକାଳମୃତ୍ୟୁ, ଦୁର୍ଭିକ୍ଷ, ଅଗ୍ନ୍ୟୁତ୍ପାତ ହେଲେ ରାଜାଙ୍କର ଦୋଷ । କାରଣ,

"ରାଜଦୋଷୈର୍ବିପଦ୍ୟନ୍ତେ ପ୍ରଜାହ୍ୟବିଧିପାଳିତାଃ
ଅସଦ୍‌ବୃତ୍ତେ ହି ନୃପତାବକାଲେ ମ୍ରିୟତେ ଜନଃ"
"ରାମାୟଣ—ଉତ୍ତରକାଣ୍ଡ"

ରାଜାଙ୍କ ଦୋଷରେ ଅନ୍ୟାୟ, ଅବିଧି ଓ ଅତ୍ୟାଚାରରେ ପ୍ରଜାମାନେ ବିପଦାପନ୍ନ ହୁଅନ୍ତି ଏବଂ ରାଜା ଅସତ୍ ପଥରେ ଗମନ କଲେ ପ୍ରଜାମାନେ ଅକାଳରେ ମରନ୍ତି । ପ୍ରାଚୀନ ଯୁଗର ହିନ୍ଦୁମାନଙ୍କର ରାଜାମାନଙ୍କଠାରେ ଏପରି ଗଭୀର ଅନୁରାଗ ଓ ବିଶ୍ୱାସରୁ କିଏ ସମ୍ଭବ ନ କରିବ ଯେ ସେକାଳର ରାଜାମାନେ ଦେବତାଙ୍କର ଅଂଶ ଘେନି ଏ ସଂସାରରେ ଜନ୍ମ ହେଉଥିଲେ ଏବଂ ଇଚ୍ଛାକଲେ ମଧ୍ୟ ସେମାନେ ଯଥେଚ୍ଛାଚାରୀ ଶାସକ ହୋଇ ପାରୁଥିଲେ । କାରଣ, ନିଜର ଧର୍ମବିଶ୍ୱାସ ଓ ବିବେକ ଛଡ଼ା ସେମାନଙ୍କର ଅତ୍ୟାଚାର ଓ ଉପଦ୍ରବକୁ ଦମନ କରିବା ନିମନ୍ତେ ସେତେବେଳେ ତାଙ୍କ ରାଜ୍ୟରେ ପ୍ରଜା-ଶକ୍ତି ଆଦୌ ନ ଥିଲା । ପ୍ରଜାମାନଙ୍କ ମଧ୍ୟରେ କୌଣସି ବିଦ୍ରୋହାତ୍ମକ ଆନ୍ଦୋଳନ ନ ଥିଲା । ଭାଗ୍ୟ ଉପରେ ନିର୍ଭର କରି ପ୍ରଜାମାନେ ସେତେବେଳେ ସକଳ ପ୍ରକାର ଅତ୍ୟାଚାର ଓ ନିର୍ଯାତନା ନୀରବରେ ସହ୍ୟ କରୁଥିଲେ । ଲୋକମାନଙ୍କର ଓ ଐତିହାସିକମାନଙ୍କର ପ୍ରାଚୀନ ହିନ୍ଦୁ ନୃପମାନଙ୍କ ସମ୍ବନ୍ଧରେ ଏପରି ଭ୍ରାନ୍ତ ଧାରଣା ହେବା ସ୍ୱାଭାବିକ ହେଲେ ମଧ୍ୟ ଏଥିରୁ କଥାରେ ଆଦୌ ସତ୍ୟ ନାହିଁ । ପ୍ରାଚୀନ ଭାରତର ରାଜାମାନେ,

ଯଥେଚ୍ଛାଗୃହୀ ଭାବରେ ଶାସନ କରି ପାରୁ ନ ଥିଲେ । ସେ ଯୁଗରେ ଏ ଦେଶରେ କେବଳ ରାଜତନ୍ତ୍ର ନ ଥିଲା, ପ୍ରଜାତନ୍ତ୍ର ମଧ୍ୟ ଥିଲା । ଅନେକ ରାଜ୍ୟରେ ରାଜା ନ ଥିଲେ । ପ୍ରଜାମାନେ ନିଜେ ନିଜେ ସେମାନଙ୍କର ରାଜ୍ୟ ଶାସନ କରୁଥିଲେ । ନୂତନ ଆଲୋଚନା ଓ ଗବେଷଣା ଫଳରେ ଆମ୍ଭେମାନେ ପ୍ରାଚୀନ ଭାରତର ରାଜନୀତି ଓ ରାଜ୍ୟ-ଶାସନ ସମ୍ବନ୍ଧରେ ଅନେକ ନୂତନ ତଥ୍ୟ ପାଉ । ବର୍ତ୍ତମାନ ଐତିହାସିକମାନେ କହନ୍ତି ଯେ ସେକାଳରେ କୌଣସି ରାଜ୍ୟର ରାଜାର ପ୍ରଜା-ପୀଡ଼କ ହେବାର ସମ୍ଭାବନା ନ ଥିଲା । ସେମାନଙ୍କର ଅତ୍ୟାଚାରର ଅଂକୁଶ ସ୍ୱରୂପ ଥିଲା 'ସଭା' 'ସମିତି' ଓ 'ମନ୍ତ୍ରୀ-ପରିଷଦ୍' * । 'ସମିତି'ର ବିନାନୁମତିରେ ରାଜ୍ୟଶାସନ ସଂପର୍କୀୟ କୌଣସି କାର୍ଯ୍ୟରେ ରାଜା ହସ୍ତକ୍ଷେପ କରି ପାରୁ ନ ଥିଲେ † । 'ସମିତି'ର ସଭ୍ୟମାନଙ୍କ ମଧ୍ୟରେ କୌଣସି ଜଟିଳ ବିଷୟରେ ମତଭେଦ ହେଲେ ଅଧିକ ସଂଖ୍ୟକ ସଭ୍ୟମାନଙ୍କର ମତ ଗ୍ରାହ୍ୟ ହେଉଥିଲା ‡ । 'ବୌଦ୍ଧଜାତକ' ଓ 'ଶୁକ୍ରନୀତି'ରୁ ମଧ୍ୟ ଜଣାଯାଏ କୌଣସି ରାଜା ପ୍ରଜା-ପୀଡ଼କ ଓ ଅତ୍ୟାଗୃହୀ ହେଲେ ପ୍ରଜାସାଧାରଣ 'ସଭା' ଓ 'ସମିତି' ସାହାଯ୍ୟରେ ସେହି ଦୁଷ୍ଟ ରାଜାଙ୍କୁ ସିଂହାସନଚ୍ୟୁତ କରି ପାରୁଥିଲେ ଏବଂ ତାହାଙ୍କ ସ୍ଥାନରେ ନୂତନ ରାଜା ନିଯୁକ୍ତ କରୁଥିଲେ § ।

* "Public administration in ancient India" by Pramathanath Banerjee, p. 94-105.

† The king was supposed not to do anything without the consent of the council—Banerj e, p. 108

‡ ଯଦ୍‌ଭୂୟିଷ୍ଠା ବ୍ରୂୟୁଃ ତତ୍ କୁର୍ଯ୍ୟାତ୍"—Banerjee, p 102

§ B. O. R. S. J. "Kingship in the Jatakas" Vol-VII, Part II & III, p. 100

ରାଜନୀତିକୁଶଳ ପଣ୍ଡିତ ଶୁକ୍ରାଚାର୍ଯ୍ୟଙ୍କ ପ୍ରଣୀତ 'ଶୁକ୍ରନୀତି'ରୁ ପ୍ରାଚୀନ ଭାରତର ରାଜତନ୍ତ୍ର, ରାଜ୍ୟ-ଶାସନ, ରାଜାର କର୍ତ୍ତବ୍ୟ, ଅତ୍ୟାଚାରୀ ଓ ପ୍ରଜା-ପୀଡ଼କ ରାଜା ବିରୁଦ୍ଧରେ ପ୍ରଜାମାନଙ୍କର କଠୋର ପ୍ରତିକାର, ରାଜ୍ୟ ଶାସନରେ ପ୍ରଜାମାନଙ୍କର ଦାବୀ ଓ ଅଧିକାର ଏପରି କି ସେହି ସୁଦୂର ଅତୀତରେ ଭାରତରେ କୌଣସି କୌଣସି ରାଜ୍ୟରେ ପ୍ରଚଳିତ ଥିବା ସ୍ୱାୟତ୍ତ-ଶାସନ ଓ ପ୍ରଜାତନ୍ତ୍ର ସମ୍ବନ୍ଧରେ ଅନେକ ନୂତନ ସତ୍ୟ ମିଳେ । ଏହି 'ଶୁକ୍ରନୀତି' ଉପରେ ପ୍ରତିଷ୍ଠିତ କରି ଏହି ପ୍ରବନ୍ଧରେ ପ୍ରମାଣ କରିବାକୁ ହେବ ଯେ ପ୍ରାଚୀନ ଭାରତର ହିନ୍ଦୁ-ରାଜାମାନେ 'ମହତୀ ଦେବତା' ନ ଥିଲେ, ପ୍ରଜାମାନେ ସେମାନଙ୍କୁ—ବିଶେଷତଃ ପ୍ରଜାପୀଡ଼କ ଅତ୍ୟାଚାରୀ ରାଜାମାନଙ୍କୁ କଦାପି ଭଗବାନଙ୍କର ପ୍ରତିଭୂ ବୋଲି ପୂଜା କରୁ ନ ଥିଲେ । ରାଜା କେବଳରେ ଅତ୍ୟାଚାର ଓ ଉପଦ୍ରବ କଲେ, ପ୍ରଜାମାନଙ୍କୁ ନାନା ଅବୈଧ ଭାବରେ ନିର୍ଯ୍ୟାତିତ କଲେ, ସେମାନେ ସିଂହାସନରୁ ବିତାଡ଼ିତ ହେଉଥିଲେ ଏବଂ ପ୍ରଜାମାନଙ୍କର ରାଜା, ରାଜ୍ୟଶାସନ ଉପରେ ଅନେକ ପ୍ରଭାବ ଥିଲା ।

ବଙ୍ଗ ପ୍ରଦେଶର ସୁନାମଧନ୍ୟ ପଣ୍ଡିତ ବିନୟକୁମାର ସରକାର 'ଶୁକ୍ରନୀତି'କୁ ଇଂରେଜୀରେ ଅନୁବାଦ କରି ସମସ୍ତ ଭାରତର କୃତଜ୍ଞତା-ଭାଜନ ହୋଇଅଛନ୍ତି । 'ଶୁକ୍ରନୀତି' ସମ୍ବନ୍ଧରେ ସରକାର ମହୋଦୟ କହନ୍ତି, "ଶୁକ୍ରନୀତି ପରି ଗ୍ରନ୍ଥ ସଂସ୍କୃତ ବାଙ୍ମୟରେ ଥିବାରୁ ଯେ କୌଣସି ସଭ୍ୟ ଜାତିର ସାହିତ୍ୟର ଇତିହାସରେ ବିରଳ । ଏହା ଏବେ ସୁଦ୍ଧା ଯେ କୌଣସି ଦେଶର ରାଜାମାନଙ୍କର ଶାସନ-ପଦ୍ଧତିକୁ ଯେପରି ମହିମାନ୍ୱିତ ଓ ଗୌରବଶାଳୀ କରିପାରେ, ସେହିପରି ରାଜନୀତିଜ୍ଞ ପଣ୍ଡିତମାନଙ୍କର ବୁଦ୍ଧି ଓ ପ୍ରଜ୍ଞାକୁ ଅଧିକ ତୀକ୍ଷ୍ଣ ଓ ଉଜ୍ଜ୍ୱଳ କରିପାରେ ।" ଏହି ଉପାଦେୟ ସରସ ଗ୍ରନ୍ଥ ସବୁ

ଦେଶରେ, ସବୁ ଯୁଗରେ, ସକଳ ଅବସ୍ଥାରେ ଜଗତର ଆଦରର ସାମଗ୍ରୀ । 'ଶୁକ୍ରନୀତି'ରେ ଯେ କେବଳ ରାଜନୀତି କଥା ଅଛି, ତାହା ନୁହେ । ଦେଶର ଅର୍ଥନୈତିକ, ସାମାଜିକ ଓ ଅନ୍ୟାନ୍ୟ ବିଷୟରେ ମଧ୍ୟ ଅନେକ ସାରତତ୍ତ୍ୱ ଅଛି * ।

'ଶୁକ୍ରନୀତି' ପାଞ୍ଚଟି ଅଧ୍ୟାୟରେ ବିଭକ୍ତ :—

୧ମ ଅଧ୍ୟାୟ—ରାଜାମାନଙ୍କର କର୍ତ୍ତବ୍ୟ ।
୨ୟ „ —ଯୁବରାଜ ଓ ଉଚ୍ଚ ଶ୍ରେଣୀୟ ରାଜକର୍ମଚାରୀମାନଙ୍କର କର୍ତ୍ତବ୍ୟ ।
୩ୟ „ —ରାଜା ଓ ପ୍ରଜାମାନଙ୍କ ନିମନ୍ତେ କେତେକ ନୀତି ଓ ଉପଦେଶ ।
୪ର୍ଥ „ —ଶତ୍ରୁ ଓ ମିତ୍ରଙ୍କର ଲକ୍ଷଣ ଓ ଚରିତ୍ର ନିର୍ଦ୍ଦେଶ ।
୫ମ „ —ବିବିଧ ପ୍ରସଙ୍ଗ, ପ୍ରଜା ଓ ରାଜ୍ୟର ଉନ୍ନତି ବିଧାନ ନିମନ୍ତେ ନାନା ଉପାୟ ।

ଏହି ବିଭିନ୍ନ ଅଧ୍ୟାୟମାନଙ୍କରେ ବର୍ଣ୍ଣିତ ବିଷୟମାନଙ୍କର ଆଲୋଚନା କଲେ ଦେଖାଯାଏ, ଶୁକ୍ରାଚାର୍ଯ୍ୟ ଦେଶର ଶାସନ, ବିଚାର-ପ୍ରଣାଳୀ, ଯୁଦ୍ଧ, ଶାନ୍ତି ଓ ଧର୍ମନୀତି ସମ୍ବନ୍ଧରେ ଅନେକ ତତ୍ତ୍ୱ ଉଲ୍ଲେଖ କରିଅଛନ୍ତି । ସୁତରାଂ ପ୍ରାଚୀନ ଭାରତର ରାଜା ଓ ରାଜତନ୍ତ୍ର ବିଷୟରେ ନୂତନ ତତ୍ତ୍ୱ ଆବିଷ୍କାର କରିବାରେ ଏହି 'ଶୁକ୍ରନୀତି' ଆମ୍ଭମାନଙ୍କର ପ୍ରଧାନ ସହାୟ ଓ ସମ୍ବଳ ।

'ଶୁକ୍ରନୀତି' ବର୍ଣ୍ଣିତ ପ୍ରାଚୀନ ଭାରତର ରାଷ୍ଟ୍ର ଓ ରାଜତନ୍ତ୍ର ସମ୍ବନ୍ଧରେ ଆଲୋଚନା କରିବାକୁ ଯାଇ କୌଣସି ସିଦ୍ଧାନ୍ତରେ ଉପନୀତ ହେବା ପୂର୍ବରୁ ବର୍ତ୍ତମାନ ଆମ୍ଭମାନଙ୍କୁ ଦେଖିବାକୁ ହେବ

* The Modern Review—Feb., 1916, p. 153.

ଶୁକ୍ରାଚାର୍ଯ୍ୟ କେଉଁ ଯୁଗର ଲୋକ ଏବଂ 'ଶୁକ୍ରନୀତି' କେଉଁ ସମୟର ଲେଖା । 'କାମନ୍ଦକୀୟ ନୀତିସାର' ସଂସ୍କୃତ ଭାଷାରେ ଲିଖିତ ପ୍ରାଚୀନ-କାଳର ଅନ୍ୟ ଗୋଟିଏ କ୍ଷୁଦ୍ର ରାଜନୀତି ଗ୍ରନ୍ଥ । ଏହି ଗ୍ରନ୍ଥରେ 'ଶୁକ୍ରନୀତି'ର ବହୁଳ ପ୍ରଶଂସା ଦେଖାଯାଏ ଏବଂ 'ଶୁକ୍ରନୀତି'ରୁ କେତେକ ଅମୂଲ୍ୟ ଓ ଉପାଦେୟ ଶ୍ଳୋକ ମଧ୍ୟ 'କାମନ୍ଦକୀୟ'ରେ ଉଦ୍ଧୃତ ହୋଇଅଛି । ସୁତରାଂ ଅନୁମାନ କରିବା ସ୍ୱାଭାବିକ, 'ଶୁକ୍ରନୀତି' 'କାମନ୍ଦକୀୟ ନୀତିଶାସ୍ତ୍ର' ପୂର୍ବରୁ ଲେଖା ହୋଇଅଛି । 'କାମନ୍ଦକୀୟ ନୀତିଶାସ୍ତ୍ର'ର ସମୟ ନିରୂପଣ କରିବାକୁ ଯାଇ ପ୍ରତ୍ନତତ୍ତ୍ୱବିତ୍ ଡାକ୍ତର ଫ୍ରେଡ଼ରିକ୍ କହନ୍ତି, "ସମ୍ପ୍ରତି ବାଲିଦ୍ୱୀପରେ 'କାମନ୍ଦକୀୟ ନୀତିଶାସ୍ତ୍ର' ଅତି ଆଦରଣୀୟ ରାଜନୀତି ଗ୍ରନ୍ଥ ।" ଜଫୋର୍ଡ ଓ ରଫଲସ୍ ପ୍ରଭୃତି ପଣ୍ଡିତମାନଙ୍କର ଗବେଷଣାରୁ ଜଣାଯାଏ, ବୌଦ୍ଧଧର୍ମର ପ୍ରାବଲ୍ୟ ଓ ପ୍ରାଧାନ୍ୟ ଯୋଗୁ ଜାଭାଦ୍ୱୀପର ହିନ୍ଦୁମାନେ ବ୍ୟତିବ୍ୟସ୍ତ ହୋଇ ଧର୍ମନାଶ ଭୟରେ ଖ୍ରୀଷ୍ଟ ଚତୁର୍ଥ ଶତାବ୍ଦୀରେ ସେମାନଙ୍କର ସମସ୍ତ ଗୃହୋପକରଣ ଓ ଧର୍ମଗ୍ରନ୍ଥ ସହିତ ବାଲିଦ୍ୱୀପକୁ ଚାଲିଯାଇଥିଲେ । ସେହି ଐତିହାସିକମାନେ ମଧ୍ୟ କହନ୍ତି, "ଏହାପରେ ଭାବରେ ଜାଭାରୁ ଚାଲିଆସି ବାଲିଦ୍ୱୀପରେ ବାସ କରିବା ପରେ ସେମାନଙ୍କର ଭାରତ ସହିତ କୌଣସି ପ୍ରକାର ସମ୍ବନ୍ଧ କିମ୍ବା ଭାବର ଆଦାନପ୍ରଦାନ ନ ଥିଲା । ସୁତରାଂ ବାଲିଦ୍ୱୀପରେ ବର୍ତ୍ତ-ମାନ 'କାମନ୍ଦକୀୟ ନୀତିଶାସ୍ତ୍ର' ପ୍ରଭୃତି ଯେଉଁ ଧର୍ମଗ୍ରନ୍ଥମାନ ମିଳେ ତାହା ନିଶ୍ଚୟ ଖ୍ରୀଷ୍ଟ ଚତୁର୍ଥ ଶତାବ୍ଦୀ ପୂର୍ବରୁ ଲିଖିତ ହୋଇଥିବ * ।"

---

* Report submitted by Dr. Fredric to the Batavian Society of Arts and Sciences on the Sanskrit Literature of the Island of Bali.

ସୁତରାଂ 'କାମନ୍ଦକୀୟ' ନୀତିଶାସ୍ତ୍ର ପ୍ରଶଂସିତ 'ଶୁକ୍ରନୀତି' ଯେ ଖ୍ରୀଷ୍ଟ ଚତୁର୍ଥ ଶତାବ୍ଦୀର ବହୁ ପୂର୍ବରୁ ଲେଖା ହୋଇଥିଲା, ଏହା ସୁନିଶ୍ଚିତ । 'ଶୁକ୍ରନୀତି'ରେ ଯେଉଁ ରାଜନୈତିକ ଶାସ୍ତ୍ର, ଅନୁଷ୍ଠାନ ଓ ଆଇନର ବ୍ୟବହାରର ଉଲ୍ଲେଖ ଅଛି, ତାହା ଖ୍ରୀଷ୍ଟ ପ୍ରଥମ କିମ୍ବା ଦ୍ୱିତୀୟ ଶତାବ୍ଦୀର ହିନ୍ଦୁ-ଭାରତର ଐତିହାସିକ ଘଟଣାମାନଙ୍କୁ ଲକ୍ଷ୍ୟ କରି ଲେଖା ହୋଇଅଛି ବୋଲି ବିଶ୍ୱାସ କରିବାକୁ ହେବ । ସୁତରାଂ 'ଶୁକ୍ରନୀତି' ବର୍ଣ୍ଣିତ ରାଜତନ୍ତ୍ର ଓ ରାଜ୍ୟ-ଶାସନ ପ୍ରଣାଳୀ ସମ୍ବନ୍ଧରେ ଅନୁସନ୍ଧାନ କରିବାକୁ ହେଲେ ଆମ୍ଭମାନଙ୍କୁ ମନେ ରଖିବାକୁ ହେବ ପ୍ରାୟ ୨୦୦୦ ବର୍ଷ ତଳର ପ୍ରାଚୀନ ଭାରତର ରାଜନୀତିର ଇତିହାସ ଆମ୍ଭମାନଙ୍କୁ ଆଲୋଚନା କରିବାକୁ ହେଉଅଛି * ।

'ଶୁକ୍ରନୀତିର' ପ୍ରଥମ ଓ ଦ୍ୱିତୀୟ ଅଧ୍ୟାୟରେ ବହୁତ ରାଜନୀତିପୂର୍ଣ୍ଣ ତତ୍ତ୍ୱ ଅଛି । ବର୍ତ୍ତମାନ ସେଥିର କେତେକ ଶ୍ଳୋକର ସାରମର୍ମ ଉଦ୍ଧାର କରିଯାଇ ଦେଖାଯାଉ ପ୍ରାଚୀନ ଭାରତର ରାଜତନ୍ତ୍ରର ପ୍ରକାର ଓ ପ୍ରକୃତି କିପରି ଥିଲା; ଅତ୍ୟାଚାରୀ ଓ ଦୁର୍ବିନୀତ ରାଜାମାନଙ୍କର କ୍ଷମତା ଚୂର୍ଣ୍ଣ କରିବା ନିମନ୍ତେ ପ୍ରଜାମାନଙ୍କ ହାତରେ କି ପ୍ରକାର ଅସ୍ତ୍ର ଥିଲା ଏବଂ ସେମାନେ କିପରି ଏ ଅସ୍ତ୍ର ରାଜାଙ୍କ ବିରୁଦ୍ଧରେ ପ୍ରୟୋଗ କରି କୃତକାର୍ଯ୍ୟ ହେଉଥିଲେ ।

"ଧର୍ମ ଆଚରଣ କରୁଥିବା ରାଜା କେବଳ ଦେବତାଙ୍କର ଅଂଶ ଯେଉଁ ଜନ୍ମ ହୋଇଥାନ୍ତି । ଏହାର ବିପରୀତ ଯେ ରାଜା ସେ ରାକ୍ଷସଙ୍କଠା ଯେଉଁ ଜନ୍ମ ହୋଇଥାନ୍ତି । ଏପରି ରାଜା ଧର୍ମର

* The Modern Review, Feb, 1916, p. 154.

ଶତ୍ରୁ ଏବଂ ପ୍ରଜାମାନଙ୍କର କଣ୍ଟକ (୧ମ ଅଧ୍ୟାୟ ୧୩୯-୧୪୦) * । ଯେଉଁ ରାଜା ସାହସୀ, ପରାକ୍ରମଶାଳୀ, ଶତ୍ରୁଜେତା ଓ ପ୍ରଶସ୍ତମନା, ସେ ଦେବତାଙ୍କର ଅଂଶରେ ଜନ୍ମ । ଯେ ଏହାର ବିପରୀତ ସେ ରାକ୍ଷସ ଅଂଶରେ ଜନ୍ମ (୧ମ ଅଧ୍ୟାୟ ୧୬୭-୧୭୧) । ଯେଉଁ ରାଜ୍ୟରେ ମନ୍ତ୍ରୀ ନାହାନ୍ତି ଏବଂ ରାଜକାର୍ଯ୍ୟରେ ପରାମର୍ଶ ଦେବା ନିମନ୍ତେ ସୁହୃଦ୍ ନାହାନ୍ତି, ସେ ରାଜତନ୍ତ୍ରରେ କୌଣସି ଶୃଙ୍ଖଳା କିମ୍ବା ସୌନ୍ଦର୍ଯ୍ୟ ନାହିଁ (୧ମ ଅ: ୧୮୯-୧୯୦) । ଯେଉଁ ରାଜା ପ୍ରଜା-ପାଳକ କିମ୍ବା ପ୍ରଜା-ରକ୍ଷକ ନୁହନ୍ତି, ସେ ବଳୀବର୍ଦ୍ଦ ଓ ଗର୍ଦ୍ଦଭ ସଦୃଶ (୧ମ-୨୪୯-୨୫୦) । ଯେଉଁ ରାଜା ବୁଦ୍ଧିମାନ୍ ଲୋକ ପ୍ରତି ଶତ୍ରୁତା ଆଚରଣ କରେ, ପ୍ରତାରକମାନଙ୍କ ଦ୍ୱାରା ଚାଳିତ ହୁଏ ଏବଂ ନିଜର ଦୋଷ ଦେଖିପାରେ ନାହିଁ, ସେ ନିଜେ ନିଜର ଧ୍ୱଂସର କାରଣ ହୁଏ (୧ମ-୨୫୫-୨୫୬) । ଯେଉଁ ରାଜା ନିର୍ମମ ଓ ନିଷ୍ଠୁର, ଦୟାଦାକ୍ଷିଣ୍ୟଶୂନ୍ୟ, ଶଠ ଓ କର୍କଶଭାଷୀ, ସେ ପ୍ରଜାମାନଙ୍କ ଦ୍ୱାରା ପରିତ୍ୟକ୍ତ ହୁଏ (୧ମ-୨୬୭ ୨୬୮) । ଯେଉଁ ରାଜା ଭୀରୁ, ଚାତୁରୀଯୁକ୍ତ, ଦୀର୍ଘସୂତ୍ରୀ ଓ ବ୍ୟସନାସକ୍ତ ତାହାଙ୍କୁ ପ୍ରଜାମାନେ ବିଶ୍ୱାସ କରନ୍ତି ନାହିଁ (୧ମ-୨୭୯-୨୮୦) । ରାଜା ନିଜର ସ୍ୱାର୍ଥ ସିଦ୍ଧି ନିମନ୍ତେ ପ୍ରଜାମାନଙ୍କୁ ପୀଡ଼ା ଦେବ ନାହିଁ । ଅତ୍ୟାଚାର-ଜର୍ଜରିତ ପ୍ରଜାମାନେ ଅବଶେଷରେ ସେହି ରାଜାର ପତନ ଓ ଧ୍ୱଂସ ସାଧନ କରନ୍ତି (୧ମ-୩୧୯-୩୨୦) । ରାଜା ସଦ୍‌ଗୁଣ ନିମନ୍ତେ ପୂଜା ପାନ୍ତି । କେବଳ ରାଜକୁଳରେ ଜନ୍ମ ବୋଲି କେହି ଉପଯୁକ୍ତ ରାଜା ହୋଇପାରିବ ନାହିଁ । ବ୍ୟକ୍ତିତ୍ୱ, ସାହସ,

* Binoykumar Sarkar's English Translation of Sukraniti.

ଶକ୍ତି ଓ ପ୍ରଜାନୁରାଗ ଯୋଗୁଁ ରାଜାର ପ୍ରତିଷ୍ଠା ହୁଏ । ରାଜକୁଳରେ ତାହାର ଜନ୍ମ ବୋଲି ନୁହେଁ (୧ମ-୩୭୩-୩୭୫)* । ବ୍ରହ୍ମା ରାଜାଙ୍କୁ ପ୍ରଜାଙ୍କର ଭୃତ୍ୟ ସ୍ୱରୂପ ସୃଷ୍ଟି କରିଅଛନ୍ତି । ପ୍ରଜାପାଳନ ନିମନ୍ତେ କେବଳ ରାଜାର ବୃତ୍ତି (୧ମ-୩୭୫) । ଯେଉଁ ରାଜା କେବଳ ନିଜ ଇଚ୍ଛାରେ ଚାଳିତ ହୋଇ ଯଥେଚ୍ଛାଚାରୀ ଶାସକ ହୁଏ, ସେ ରାଜ୍ୟର ସମସ୍ତ ପ୍ରକାର ଅନିଷ୍ଟ ଓ ଅମଙ୍ଗଳର କାରଣ ହୁଏ । ସେ ସିଂହାସନରୁ ଶୀଘ୍ର ବିତାଡ଼ିତ ହୁଏ ଏବଂ ପ୍ରଜାମାନେ ଏପରି ରାଜା ସହିତ କୌଣସି ସମ୍ପର୍କ ରଖନ୍ତି ନାହିଁ (୨ୟ ଅଧ୍ୟାୟ ୭-୮) । ଯେଉଁ ରାଜା ରାଜ୍ୟର ଉନ୍ନତି କରିବା ଉଦ୍ଦେଶ୍ୟରେ ମନ୍ତ୍ରୀମାନଙ୍କର ପରାମର୍ଶ ଗ୍ରହଣ କରେ ନାହିଁ, ସେ ରାଜା ନୁହେଁ, ଅର୍ଥଲମ୍ପଟ (୨ୟ-୫୧୫-୫୧୬)† । ରାଜା ଯଦି ସତ୍ୟ, ଧର୍ମ ଓ ନୀତିର ଶତ୍ରୁ ହୁଅନ୍ତି, ପ୍ରଜାମାନେ ଶୀଘ୍ର ତାହାକୁ ପରିତ୍ୟାଗ କରିବେ (୨ୟ-୫୪୯-୫୫୦) ‡ ଏହିପରି ଅଚରଣ କରୁଥିବା ରାଜା ସିଂହାସନରୁ ବିତାଡ଼ିତ ହେଲେ ରାଜ-ପୁରୋହିତମାନେ ମନ୍ତ୍ରୀମାନଙ୍କର ପରାମର୍ଶରେ ଯେଉଁ

---

* 'Sukraniti—It is not birth that makes a king. He is not respected so much because of his ancestry, as for his prowess, strength and valour, p. 24. B. Sarkar's English Translation.

† "A thief in the form of a ruler, an exploiter of the people's wealth" p. 87, Sarkar—Sukraniti.

‡ "× × people should desert him as the ruiner of the state." p. 89.

ରାଜବଂଶରୁ ଆଉ ଜଣେ ସଦ୍‌ଗୁଣସମ୍ପନ୍ନ ଲୋକଙ୍କୁ ରାଜସିଂହାସନରେ ଅଭିଷିକ୍ତ କରିବେ ( ୨ୟ-୫୫୧-୫୫୨ ) । ରାଜାଙ୍କର ମୋହଗ୍ରସ୍ତତା ଲେଖା ପ୍ରକୃତ ରାଜାର ପରଗୃହୀତ—ତାହାଙ୍କର କୁଳ, ସମ୍ପଦ ସଂଚ୍ଛେଦ କିମ୍ବା ଧନସମ୍ପଦ ନୁହେଁ (୨ୟ-୫୮୨) । ରାଜା ବ୍ୟସନାସକ୍ତ ଓ କୁପଥଗାମୀ ହେଲେ ପ୍ରଜାମାନେ ଶକ୍ତିଶାଳୀ ଓ ଧର୍ମାନୁରାଗୀ ଶତ୍ରୁମାନଙ୍କର ସାହାଯ୍ୟରେ ତାଙ୍କୁ ଭୟ ଦେଖାଇବେ (୪ର୍ଥ-୨୨୫-୨୨୭ – Section I )"

ଉପରେ ଯେଉଁ ଶ୍ଳୋକମାନ 'ଶୁକ୍ରନୀତି'ରୁ ଉଦ୍ଧାର କରାଗଲା ସେଥିରୁ ଜଣାପଡ଼େ ପ୍ରାଚୀନ ରାଜଶକ୍ତି ଓ ସମାଜର ଆବିର୍ଭାବ ଏବଂ ବୃଦ୍ଧି କେଉଁଠାରୁ ହେଲା, ସ୍ୱେଚ୍ଛାଚାରୀ, ପ୍ରଜାପୀଡ଼କ ଓ ପ୍ରଜାବତ୍ସଳ ରାଜାପ୍ରତି ଲୋକମାନଙ୍କର କି ପ୍ରକାର ବ୍ୟବହାର ହେବା ଉଚିତ । ବର୍ତ୍ତମାନ ଉପର୍ଯ୍ୟୁକ୍ତ ଶ୍ଳୋକମାନଙ୍କୁ ବିଶ୍ଳେଷଣ କରି ଦେଖାଯାଉ ଏହି ଦୁଇଟି ରାଜନୈତିକ ନିଗୂଢ଼ ତତ୍ତ୍ୱ ସମ୍ବନ୍ଧରେ 'ଶୁକ୍ରନୀତି'ରୁ ଆମ୍ଭେମାନେ କି ତଥ୍ୟ ପାଉଁ ।

ପ୍ରଥମତଃ ସକଳ ଶ୍ରେଣୀର ସୁଶାସକ ଓ କୁଶାସକ ରାଜା ଯେ 'ମହତୀ ଦେବତା ହ୍ୟେଷା', 'ନାବିଷ୍ଣୁଃ ପୃଥିବୀପତିଃ' ଓ ଦେବତାର ଅଂଶରେ ଜନ୍ମ ଏକଥା ଶୁକ୍ରନୀତିକାର କୌଣସିଠାରେ ଉଲ୍ଲେଖ କରି ନାହାନ୍ତି । ବରଂ ସଂସ୍କାର ଓ ପ୍ରାଞ୍ଜଳଭାବରେ ସୁଶାସକ ଓ କୁଶାସକ ରାଜାମାନଙ୍କ ମଧ୍ୟରେ ଏକ ବିରାଟ ପାର୍ଥକ୍ୟ ନିର୍ଦ୍ଦେଶ କରି ଯାଇଅଛନ୍ତି । ଉତ୍ତମ ଓ ଧର୍ମିକ ରାଜାମାନେ କେବଳ ଦେବତାଙ୍କର ଅଂଶରେ ଜନ୍ମ ଏବଂ ପ୍ରଜାପୀଡ଼କ ଓ ନରପିଶାଚ ରାଜାମାନେ ରାକ୍ଷସ ଅଂଶରେ ଜନ୍ମ ଏକଥା 'ଶୁକ୍ରନୀତି' ଉଚ୍ଚସ୍ୱରରେ ଘୋଷଣା କରୁଅଛି । ସୁତରାଂ ସକଳ ଶ୍ରେଣୀର ରାଜାମାନେ ଯେ ଦେବତାମାନଙ୍କର

ପ୍ରତିନିଧି ଏବଂ ଲୋକମାନଙ୍କର ବରେଣ୍ୟ ଓ ନମସ୍ୟ ଏ ଧାରଣା ଆମ୍ଭମାନଙ୍କର ଅମୂଳକ ଓ ଉପେକ୍ଷଣୀୟ ।

ଦ୍ୱିତୀୟତଃ ରାଜଶକ୍ତି ଓ ରାଜାର ଉତ୍ପତ୍ତି କେବଳ ଜନ୍ମ ଓ ବଂଶ କୁଳରୁ ହୁଏ ନାହିଁ । ଜଣେ ଲୋକ କେବଳ ସେ ରାଜକୁଳରେ ଜନ୍ମ, ତାହାର ମସ୍ତକରେ ରତ୍ନଖଚିତ ମୁକୁଟ, ହସ୍ତରେ ରାଜଦଣ୍ଡ, ରାଜକୋଷରେ ଅପରିମେୟ ଧନସମ୍ପଦ ଅଛି ବୋଲି କଦାପି ରାଜାରୂପେ ସମ୍ମାନିତ ଓ ପୂଜିତ ହୋଇ ନ ପାରେ । ଧର୍ମ, ପୁଣ୍ୟ, ପ୍ରଜାନୁରାଗ, ଦୟା ଓ ଦାକ୍ଷିଣ୍ୟ ହିଁ ପ୍ରକୃତ ରାଜାର ଲକ୍ଷଣ । ଯେ ପର୍ଯ୍ୟନ୍ତ ରାଜା ଧର୍ମମାର୍ଗରେ ଚାଳିତ ହେଉଅଛି, ସେ ପର୍ଯ୍ୟନ୍ତ ସେ ରାଜା; ଧର୍ମମାର୍ଗରୁ ତିଳେ ମାତ୍ର ବିଚ୍ୟୁତ ହେଲେ ତାହାର ପତନ ଅବଶ୍ୟମ୍ଭାବୀ—ଧ୍ୱଂସ ଅନିବାର୍ଯ୍ୟ ।

ତୃତୀୟତଃ 'ଶୁକନୀତି' ସମସ୍ତ ରାଜାମାନଙ୍କ ପ୍ରତି ଦେବତ୍ୱ ଆରୋପ କରେ ନାହିଁ । ପ୍ରତ୍ୟେକ ରାଜା ଦେବତାଙ୍କର ଅଂଶ ନୁହନ୍ତି । ସୁତରାଂ ଯେ କୌଣସି ଶ୍ରେଣୀର ରାଜାଙ୍କର ଯେ କୌଣସି ଆଜ୍ଞା ଯେ ପ୍ରଜାମାନେ ପାଳନ କରିବାକୁ ବାଧ୍ୟ ଏ କଥାର ଉଲ୍ଲେଖ 'ଶୁକନୀତି'ରେ କୁତ୍ରାପି ଦେଖାଯାଏ ନାହିଁ । ବରଂ ରାକ୍ଷସ ଅଂଶରେ ଜନ୍ମ ହୋଇଥିବା ପ୍ରଜାପୀଡ଼କ ରାଜା ଲୋକମାନଙ୍କଦ୍ୱାରା ପରିତ୍ୟାଜ୍ୟ ଏ କଥାର ସ୍ପଷ୍ଟ ଉଲ୍ଲେଖ ଅଛି । ସେଥିପାଇଁ ଶୁକାଚାର୍ଯ୍ୟ ରାଜାମାନଙ୍କୁ ତିନି ଶ୍ରେଣୀରେ ବିଭକ୍ତ କରିଅଛନ୍ତି—ସାତ୍ତ୍ୱିକ, ତାମସିକ ଓ ରାଜସ । ତାମସିକ ଓ ରାଜସ ରାଜାମାନେ ପାପ-ମାର୍ଗରେ ଚାଳିତ ହୁଅନ୍ତି, ରାକ୍ଷସ-ନୀତିରେ ରାଜ୍ୟଶାସନ କରନ୍ତି; ସୁତରାଂ ନରକରେ ପଡ଼ନ୍ତି । ସାତ୍ତ୍ୱିକ ରାଜାମାନେ ପ୍ରଜାନୁରାଗୀ, ପ୍ରଜାବତ୍ସଳ, ଧର୍ମ-

ପରାୟଣ ଓ ଉଦାରଚେତା; ସୁତରାଂ ସେମାନେ ସ୍ୱର୍ଗଲାଭ କରନ୍ତି * । 'ଶୁକ୍ରନୀତି' ଅନୁସାରେ ରାଜା 'ଦେବତା' ନୁହନ୍ତି 'ନରଦେବତା' ମାତ୍ର, ଏବଂ ଅଧର୍ମପଥାବଲମ୍ବୀ ରାଜାମାନେ ରାକ୍ଷସ ଅଂଶରେ ଜାତ । ପ୍ରତ୍ୟେକ ରାଜା ଓ ସକଳ ଶ୍ରେଣୀର ନୃପତି ଦେବତାଙ୍କର ପ୍ରତିନିଧି ସ୍ୱରୂପ ପୂଜିତ ହେଉଥିଲେ ଏବଂ ସେତେବେଳେ ଦୁର୍ମତି ପ୍ରଜାକଣ୍ଟକ ରାଜାମାନେ ପ୍ରଜାମାନଙ୍କଦ୍ୱାରା ନିନ୍ଦିତ ଓ ଘୃଣିତ ହେଉ ନ ଥିଲେ, 'ଶୁକ୍ରନୀତି' ଏପରି ତିନି ପୃଥକ୍ ଶ୍ରେଣୀରେ ରାଜା-ମାନଙ୍କୁ ବିଭକ୍ତ କରି ନ ଥାନ୍ତେ ।

ରାଜଶକ୍ତିର ଉତ୍ପତ୍ତି ସମ୍ବନ୍ଧରେ 'ଶୁକ୍ରନୀତି' ମୁକ୍ତଭାବରେ କିଛି ଉଲ୍ଲେଖ ନ କଲେ ସୁଦ୍ଧା, ପ୍ରଜାପାଳକ ଓ ଧର୍ମପରାୟଣ ରାଜାଙ୍କୁ ଦେବତାମାନଙ୍କର ପ୍ରତିନିଧିସ୍ୱରୂପ ନିର୍ଦ୍ଦେଶ କରିଥିବାରୁ, ରାଜ-ଶକ୍ତି ଓ ରାଜାଙ୍କର ଆବିର୍ଭାବ ଯେ ଭଗବାନଙ୍କଠାରୁ ଏକଥା ଶୁକ୍ରନୀତିକାର ସୁସ୍ପଷ୍ଟଭାବରେ ଘୋଷଣା କରିଅଛନ୍ତି । କିନ୍ତୁ 'ଶୁକ୍ରନୀତି'ର ପ୍ରଥମ ଅଧ୍ୟାୟରେ ଥିବା ଗୋଟିଏ ଶ୍ଳୋକରୁ ଜଣାଯାଏ ଯେ ରାଜ-ଶକ୍ତିର ମୂଳ ଉତ୍ପତ୍ତିସ୍ଥଳ ରାଜ୍ୟର ସମାଜ ଓ ଲୋକମାନେ * । ରାଜା ବ୍ରହ୍ମାଙ୍କ ଦ୍ୱାରା ସୃଷ୍ଟ ହେଲେ ସୁଦ୍ଧା ସେ ପ୍ରଜାମାନଙ୍କର ଭୃତ୍ୟ ଏବଂ ସେବକ । ସମାଜର ମଙ୍ଗଳସାଧନ କରିବା ନିମନ୍ତେ ରାଜାର ଆବିର୍ଭାବ । ସମାଜକୁ ନାନାପ୍ରକାର ଉପଦ୍ରବ ଓ ଅତ୍ୟାଚାରରୁ ରକ୍ଷା କରିବା

---

* Sukraniti, Chap 1. p. 7—'Public administration in ancient India'—Banerjee p. 71, foot-note.

† 'The ruler has been made by Brahma, a servant of the people getting his revenue as his remuneration'—Sukraniti, p. 24.

ରକ୍ଷାର କାର୍ଯ୍ୟ । ଅତି ପ୍ରାଚୀନ କାଳରେ ଯେତେବେଳେ ସମାଜରେ ଏତେ କୂଟକାପଟ୍ୟ, ଉପଦ୍ରବ ଓ ଅତ୍ୟାଗୁର ପ୍ରବେଶ କରି ନ ଥିଲା, ସେତେବେଳେ ରାଜାର ଆବଶ୍ୟକତା ନ ଥିଲା, ପ୍ରଜାମାନେ ନିଜେ ନିଜେ ଶାସନକାର୍ଯ୍ୟ ନିର୍ବାହ କରୁଥିଲେ । ସୁତରାଂ ସମାଜର କଲ୍ୟାଣ ଉଦ୍ଦେଶ୍ୟରେ ରାଜାର ସୃଷ୍ଟି । ରାଜା ପ୍ରଜାଙ୍କଠାରୁ ଯେଉଁ କର ଗ୍ରହଣ କରେ, ତାହା ତାହାର ପ୍ରଜା-ପାଳନରୂପ ଗୁରୁ ଦାୟିତ୍ୱର ସାମାନ୍ୟ ପାରିଶ୍ରମିକ ମାତ୍ର, ନିଜର ବିଳାସ ବ୍ୟସନରେ ବ୍ୟୟ କରିବା ନିମନ୍ତେ ନୁହେଁ । 'ଶୁକ୍ରନୀତି'ର ଅନ୍ୟ ଅନ୍ୟାନ୍ୟ ଶ୍ଳୋକମାନଙ୍କରେ ମଧ୍ୟ ଅଛି ରାଜା ପ୍ରଜାମାନଙ୍କର କଦାପି ଅସନ୍ତୋଷ-ଭାଜନ ହେବ ନାହିଁ । ରାଜକର୍ମଗୁରୀ ଓ ପ୍ରଜାମାନଙ୍କ ମଧ୍ୟରେ ଦ୍ୱନ୍ଦ୍ୱ କିମ୍ବା କଳହ ଉପସ୍ଥିତ ହେଲେ ରାଜା ପ୍ରଜାମାନଙ୍କର ପକ୍ଷ ଗ୍ରହଣ କରିବେ * । ଏକ ଶତ ବ୍ୟକ୍ତି ଯେଉଁ ରାଜକର୍ମଗୁରୀକୁ ଦୋଷୀ ବୋଲି ସାବ୍ୟସ୍ତ କରିବେ ରାଜା ତାକୁ ଶୀଘ୍ର କାର୍ଯ୍ୟରୁ ଅନ୍ତର କରିବେ । ପ୍ରାଚୀନ ହିନ୍ଦୁରାଜାର ଏହି ଆଦର୍ଶ, ପ୍ରଜାମାନଙ୍କ ନିମନ୍ତେ ଏତେ ଅଧୀର ବ୍ୟାକୁଳତା ଓ ଆଗ୍ରହ ଦେଖିଲେ କଦାପି ବିଶ୍ୱାସ ହୁଏ ନାହିଁ ଯେ ସେ ଯୁଗର ରାଜାମାନେ କେବଳ ଯଥେଚ୍ଛାଗୁରୀ ଶାସକ ଥିଲେ ଏବଂ ପ୍ରଜାମାନଙ୍କର ରାଜା ଉପରେ କୌଣସି ପ୍ରଭାବ କିମ୍ବା କର୍ତ୍ତୃତ୍ୱ ନ ଥିଲା । ବରଂ ରାଜା ପ୍ରଜାର ଭୃତ୍ୟତ୍ୱ ଗ୍ରହଣ କରିବା, ପ୍ରଜାମାନଙ୍କୁ କଦାପି ଅସନ୍ତୁଷ୍ଟ ନ କରିବା, ପ୍ରଜାମାନଙ୍କର ପକ୍ଷ ଅବଲମ୍ବନ କରିବା ପ୍ରଭୃତି ଅମୂଲ୍ୟ ରାଜନୀତିପୂର୍ଣ୍ଣ ଉପଦେଶରୁ ଦୃଢ଼ ଭାବରେ ପ୍ରମାଣିତ ହୁଏ ଯେ ଖ୍ରୀଷ୍ଟ ପ୍ରଥମ ଶତାବ୍ଦୀରେ ସୁଦ୍ଧା

---

* He should take the side not of his officers but of his subjects'—Sukraniti. p. 51.

ପ୍ରାଚୀନ ଭାରତର ରାଜତନ୍ତ୍ରମଧ୍ୟରେ ପ୍ରଜାତନ୍ତ୍ରର ବୀଜ ପ୍ରଚ୍ଛନ୍ନ ଭାବରେ ନିହିତ ଥିଲା । ଇନ୍ଦ୍ର ଓ ସୁର୍ଯ୍ୟାଦିଙ୍କ ରାଜା ଦେବତାର ଅଂଶରେ ଜନ୍ମ ହେଉଥିଲେ ବୋଲି ଲୋକଙ୍କର ବିଶ୍ୱାସ ଥିଲେ ସୁଦ୍ଧା ପ୍ରଜା-ମାନଙ୍କର ଧାରଣା ଥିଲା ରାଜା ପ୍ରଜାର ଭୃତ୍ୟ ଓ ରକ୍ଷକ । ରାଜା ଧର୍ମ୍ମ-ପଥରୁ ଟଳେ ବା ବିଚ୍ୟୁତ ହେଲେ ପ୍ରଜାମାନେ ତାହାର ଧ୍ୱଂସ ସାଧନ କରିବାକୁ ଚେଷ୍ଟିତ ହେଉଥିଲେ । ଏପରିକି ଖ୍ରୀଷ୍ଟ-ପୂର୍ବ ଚତୁର୍ଥ ଶତାବ୍ଦୀର ମୌର୍ଯ୍ୟସମ୍ରାଟ୍ ଅଶୋକ ମଧ୍ୟ ପ୍ରଜାନୁରାଗ ଉପରେ ନିଜର ଶାସନ-ପଦ୍ଧତିକୁ ପ୍ରତିଷ୍ଠିତ କରିଥିଲେ । ସୁତରାଂ ପ୍ରାଚୀନ ଭାରତର ଏହି ରାଜତନ୍ତ୍ରରେ ମଧ୍ୟ ପ୍ରଜାତନ୍ତ୍ରର ଯେଉଁ ଅମୂଲ୍ୟ ବୀଜ ନିହିତ ଥିଲା, ତାହା କାଳକ୍ରମେ ବିରାଟ ବୃକ୍ଷରେ ପରିଣତ ହୋଇ ଅଳ୍ପ କାଳ ମଧ୍ୟରେ ପ୍ରାଚୀନ ରାଜ-କୁଳ ଓ ରାଜତନ୍ତ୍ରର ଧ୍ୱଂସସାଧନ କରି ଆଧୁନିକ ଇଉରୋପର କେତେକ ଦେଶ ପରି ଭାରତରେ ପୂର୍ଣ୍ଣ ପ୍ରଜାତନ୍ତ୍ର ଶାସନ ପ୍ରତିଷ୍ଠିତ କରିଥାନ୍ତା, କିନ୍ତୁ ମଙ୍ଗଳମୟ ବିଶ୍ୱନିୟନ୍ତାଙ୍କର ଇଚ୍ଛା ଅନ୍ୟ ପ୍ରକାର । ଭାରତ ପ୍ରାଚୀନ କାଳରୁ କ୍ଷୁଦ୍ର ବୃହତ୍ ନାନା ସ୍ୱାଧୀନ ରାଜ୍ୟମାନଙ୍କ ମଧ୍ୟରେ ବିଭକ୍ତ ହୋଇ ଆସୁଥିବାରୁ ଏବଂ ଏହି ରାଜାମାନେ ନୀଚ ସ୍ୱାର୍ଥରେ ପ୍ରଣୋଦିତ ହୋଇ ପରସ୍ପର ମଧ୍ୟରେ ସର୍ବଦା ସଂଗ୍ରାମରେ ପ୍ରବୃତ୍ତ ହୋଇ ଦେଶର ସମୃଦ୍ଧ କଲ୍ୟାଣ, ସୁଖ ଓ ଶାନ୍ତିରେ ବ୍ୟାଘାତ ଘଟାଉଥିବାରୁ ସେ କାଳର ଭାରତୀୟମାନେ ସମସ୍ତ ରାଜନୈତିକ ଶକ୍ତିକୁ ଓ କ୍ଷୁଦ୍ର ବୃହତ୍ ସମସ୍ତ ସ୍ୱାଧୀନ ରାଜାମାନଙ୍କୁ ଏକ ଅପ୍ରତିଦ୍ୱନ୍ଦ୍ୱୀ ପ୍ରବଳପରାକ୍ରମଶାଳୀ ସମ୍ରାଟ୍ଙ୍କଠାରେ କେନ୍ଦ୍ରୀଭୂତ କରିବାକୁ ବାରମ୍ବାର ଚେଷ୍ଟା କରୁଥିଲେ । ଏହାର ଫଳରେ ପ୍ରଜାତନ୍ତ୍ରର ବୀଜ ଏ ଦେଶରେ ଅଙ୍କୁରିତ ହେବାକୁ ସମୟ ଓ ସୁଯୋଗ ପାଇ ପାରିଲା ନାହିଁ ।

ବର୍ତ୍ତମାନ ଦେଖାଯାଉ ପ୍ରଜାପୀଡ଼କ ଓ ଅତ୍ୟାଗ୍ଭୃଷ୍ଟ ରଜାମାନଙ୍କ ପ୍ରତି ସେକାଳର ଲୋକମାନଙ୍କର ବ୍ୟବହାର ଓ ଦୃଷ୍ଟି କିପରି ଥିଲା । ପ୍ରଜାମାନେ ଯେ କୌଣସି ରଜାର ଆଦେଶ ପାଳନ କରିବାକୁ ବାଧ୍ୟ ଏବଂ ରାଜା ପୀଡ଼କ ଓ ଶୋଷକ ହେଲେ ସୁଦ୍ଧା ଯେ ପ୍ରଜାମାନେ ସେଥିରେ କୌଣସି ବାଧା ନ ଦେଇ ନୀରବରେ ସବୁ ସହ୍ୟ କରିବେ ଏକଥାର ଉଲ୍ଲେଖ 'ଶୁକ୍ରନୀତି'ର କୌଣସି ଅଧ୍ୟାୟ କିମ୍ବା ଶ୍ଳୋକରେ ଦେଖାଯାଏ ନାହିଁ । ପକ୍ଷାନ୍ତରରେ ପ୍ରଜାପୀଡ଼କ ଓ ଅତ୍ୟାଗ୍ଭୃଷ୍ଟ ରାଜାକୁ ଶୁକ୍ରନୀତି 'ଗର୍ଦ୍ଦଭ' 'ବଳୀବର୍ଦ୍ଦ' ଓ 'ନିର୍ବୋଧ' ଆଖ୍ୟା ଦେଇ ସେମାନଙ୍କୁ ଆମ୍ଭମାନଙ୍କ ସମ୍ମୁଖରେ ବଡ଼ ଘୃଣିତ ଭାବରେ ଚିତ୍ରିତ କରିଅଛି । ଶୁକ୍ରାଚାର୍ଯ୍ୟ ନିର୍ଭିକଭାବରେ କହନ୍ତି ଯେ ପ୍ରଜାମାନେ ଅତ୍ୟାଗ୍ଭୃଷ୍ଟ ରଜାକୁ ଧାର୍ମିକ ଓ ଶକ୍ତିଶାଳୀ ଶତ୍ରୁର ସାହାଯ୍ୟରେ ଭୟ ଦେଖାଇବେ ଏବଂ ଏଥିରେ ତାକୁ ସତ୍‌ପଥଗାମୀ କରି ନ ପାରିଲେ ସେହି ରାଜାକୁ ପଦତ୍ୟାଗ କିମ୍ବା ସିଂହାସନଚ୍ୟୁତ କରିବେ ଏବଂ ତାହା ସ୍ଥାନରେ ଅନ୍ୟ ଗୋଟିଏ ଉପଯୁକ୍ତ ଲୋକକୁ ରାଜପଦରେ ଅଭିଷିକ୍ତ କରିବେ । ରାଜା ଯଦି ପ୍ରଜାମାନଙ୍କ ଉପରେ ଅତ୍ୟାଗ୍ଭୃର କରେ, ନିଜ ସ୍ୱାର୍ଥରେ ବୁଡ଼ିରହି ପ୍ରଜାମାନଙ୍କର ମଙ୍ଗଳ ଦେଖେ ନାହିଁ, ପ୍ରଜାମାନେ ତାର ଅତ୍ୟାଗ୍ଭୃରରେ ଜର୍ଜରିତ ହୋଇ ଅବଶେଷରେ ତାହାର ଧ୍ୱଂସ ସାଧନ କରନ୍ତି । ଦ୍ୱିତୀୟ ଅଧ୍ୟାୟରେ ମଧ୍ୟ ସ୍ପଷ୍ଟ ଉଲ୍ଲେଖ ଅଛି, ଯଦି ରଜା ଯଥେଚ୍ଛାଭାବରେ ରଜ୍ୟଶାସନ କରେ ସେ ରାଜ୍ୟରେ ସମସ୍ତ ପ୍ରକାର ଦୁଃଖ ଓ କ୍ଲେଶର କାରଣ ହୁଏ, ଏବଂ ଅବଶେଷରେ ଅପ୍ରିୟ ହୋଇ ପ୍ରଜାମାନଙ୍କଠାରୁ ବିଚ୍ଛିନ୍ନ ହୁଏ । ଯେଉଁ ରଜା ପ୍ରଜାମାନଙ୍କର କଲ୍ୟାଣ ଓ ଅକଲ୍ୟାଣ ସମ୍ବନ୍ଧରେ ମନ୍ତ୍ରୀମାନଙ୍କର ସୁପରାମର୍ଶ ଗ୍ରହଣ କରେ ନାହିଁ ସେ ରାଜା ନୁହେଁ, ରାଜଦଣ୍ଡଧାରୀ ନର-

ନିଶାଚ ଏବଂ ପ୍ରଜାର ରକ୍ତଶୋଷକ । ଶୁକ୍ରାଚାର୍ଯ୍ୟ ନୀତି ମଧ୍ୟରେ ପୌରାଣିକ କଥା ନିମିତ୍ତ କେତେକ ଦୃଷ୍ଟାନ୍ତ ମଧ୍ୟ ଦେବାକୁ ଭୁଲି ନାହାନ୍ତି । ରାଜା ବେଣୀ ଓ ଦଣ୍ଡ ଙ୍କ ପାପ ଓ ଅତ୍ୟାଚାର ଫଳରେ ନଷ୍ଟ ହୋଇଥିଲେ, ରାଜା ପ୍ରଜାପାଳକ ନ ହେଲେ ଦେବତାମାନେ ତାହାକୁ ପରିତ୍ୟାଗ କରନ୍ତି ଏବଂ ତାହାର ଧ୍ୱଂସର ସମୟ ଶୀଘ୍ର ଆସିଯାଏ । 'ଶୁକ୍ରନୀତି'ରେ କେଉଁଠାରେ ଉଲ୍ଲେଖ ନାହିଁ ଯେ ଅତ୍ୟାଚାରୀ ପ୍ରଜାକଣ୍ଟକ ଓ ସ୍ୱେଚ୍ଛାଚାରୀ ରାଜାକୁ ଦମନ କରିବା ନୀତି-ବିରୁଦ୍ଧ ଓ ଗର୍ହିତ କାର୍ଯ୍ୟ । କେବଳ ଏତିକି ନୁହେଁ, ଇଉରୋପର ଅଧିକାଂଶ ଅନେକ ରାଜ୍ୟର ଶାସନ-ପ୍ରଣାଳୀ ପରି ଅତି ପ୍ରାଚୀନ କାଳରେ ଏପରି କି ମୌର୍ଯ୍ୟସମ୍ରାଟ୍ ଚନ୍ଦ୍ରଗୁପ୍ତଙ୍କ ସମୟରେ ଏ ଦେଶରେ ମନ୍ତ୍ରୀପରିଷଦ୍ ଓ ପାର୍ଲିଆମେଣ୍ଟ ଥିଲା । ଏ ବିଷୟରେ ଗୋଟିଏ ପୃଥକ୍ ଗ୍ରନ୍ଥ ଲେଖିବାର ବାସନା ରହିଲା । ଏ ପ୍ରସଙ୍ଗରେ ଏତିକି ମାତ୍ର କୁହାଯାଇପାରେ ଯେ ଖ୍ରୀଷ୍ଟ ପ୍ରଥମ ଶତାବ୍ଦୀରେ ଜନ୍ମ ହେବାପୂର୍ବରୁ ପ୍ରଜାପୀଡ଼କ ଅତ୍ୟାଚାରୀ ରାଜାର ଅସୀମ କ୍ଷମତାର ଉଚ୍ଛେଦ ସାଧନ କରିବାକୁ ପ୍ରଜାମାନେ ଏ ଦେଶରେ ସର୍ବଦା ତତ୍ପର ଓ ଜାଗ୍ରତ ଥିଲେ । ସେହି ପ୍ରାଚୀନ ଯୁଗର ରାଜତନ୍ତ୍ରରେ ମଧ୍ୟ ପ୍ରଜାତନ୍ତ୍ରର ବୀଜ ନିହିତ ଥିଲା ଏବଂ ସବୁ ରାଜା "ମହତୀ ଦେବତା ହ୍ୟେଷା" ବୋଲି ପୂଜା ପାଉ ନ ଥିଲେ ।

---

## ମୋଗଲ ବିଦୂଷୀ ଜେବ୍-ଉନ୍ନିସା

ମୋଗଲ-ସାମ୍ରାଜ୍ୟର ଶାସନ ଭାରତବର୍ଷର ଇତିହାସରେ ଗୋଟିଏ ଯୁଗାନ୍ତକାରୀ ଘଟଣା । ଦେଶର ଆଚାର, ବ୍ୟବହାର ଶିଳ୍ପ, କଳା ଓ ସାହିତ୍ୟରେ ବହୁବର୍ଷବ୍ୟାପୀ ମୋଗଲ ରାଜତ୍ୱ

ସେତେବେଳେ ବିଶେଷ ପରିବର୍ତ୍ତନ ଓ ସଂସ୍କାର ଆଣିଛି, ଭାରତର ଇତିହାସରେ ଆଜି କୌଣସି ଘଟନା ସେପରି କରି ପାରୁଛି କି ନାହିଁ ସନ୍ଦେହ । ଗୋଟିଏ ଗୋଟିଏ ମୋଗଲ-ବାଦ୍‌ସାହ ଥିଲେ ଯେପରି ଶିଳ୍ପ, କଳା, ଧର୍ମ୍ମ ଓ ବିଦ୍ୟାର ମୂର୍ତ୍ତିମନ୍ତ ବିଗ୍ରହ ସ୍ୱରୂପ । ଅଗାଧ ସମ୍ପଦ, ଅପରିମେୟ ପ୍ରଭୁତ୍ୱ ଓ ବିଶାଳ ସାମ୍ରାଜ୍ୟ ଏସବୁ ପର୍ଯ୍ୟନ୍ତ ଭିତରେ ଥିଲେ ସୁଦ୍ଧା ମୋଗଲ ବାଦ୍‌ସାହମାନେ ବଡ଼ ବିଦ୍ୟାନୁରାଗୀ, କବି ଓ ସୁପଣ୍ଡିତ ଥିଲେ । ସୌନ୍ଦର୍ଯ୍ୟ ଓ ପ୍ରେମର ଉପାସକ ମୋଗଲ ସମ୍ରାଟମାନେ ନିଜେ ଯେପରି ବିଦ୍ୱାନ୍ ଓ ଶିକ୍ଷାନୁରାଗୀ ଥିଲେ, ସେହିପରି ନିଜ ପୁତ୍ରକନ୍ୟାମାନଙ୍କର ଶିକ୍ଷା ଓ ଦେଶର ଜନସାଧାରଣଙ୍କ ମଧ୍ୟରେ ଶିକ୍ଷା-ପ୍ରସାର ବିଷୟରେ କମ୍ ଯତ୍ନଶୀଳ ନ ଥିଲେ । ଅବଶ୍ୟ ସେତେବେଳେ ଶିକ୍ଷାର ପ୍ରସାର ନିମନ୍ତେ ଦେଶରେ ବର୍ତ୍ତମାନ ଯୁଗ ପରି କୌଣସି ସ୍ଥାୟୀ ରାଷ୍ଟ୍ରୀୟ ବ୍ୟବସ୍ଥା ନ ଥିଲା । ଧର୍ମ୍ମ ସଙ୍ଗେ ଶିକ୍ଷା ଓତପ୍ରୋତଭାବରେ ଜଡ଼ିତ ଥିଲା । ମୋଗଲ ବାଦ୍‌ସାହମାନେ ଶିକ୍ଷାର ପ୍ରସାର ନିମନ୍ତେ କୌଣସି ନିର୍ଦ୍ଦିଷ୍ଟ ବିଭାଗ ସୃଷ୍ଟି କରି ନ ଥିଲେ । ମସ୍‌ଜିଦ୍, ମଠ ଓ ପଣ୍ଡିତମାନେ ବାଦ୍‌ସାହଙ୍କଠାରୁ ଅର୍ଥ ସାହାଯ୍ୟ ପାଇ ଦେଶର ଶିକ୍ଷା-ପ୍ରସାରରେ ସହାୟତା କରୁଥିଲେ । କିନ୍ତୁ ଅନ୍ତଃପୁରବାସିନୀ ରାଜକୁମାରୀମାନଙ୍କର ଶିକ୍ଷା ନିମନ୍ତେ ବାଦ୍‌ସାହମାନେ ରାଜପ୍ରାସାଦରେ ବିଦୁଷୀ ପାରସ୍ୟ-ମହିଳା ନିଯୁକ୍ତ କରୁଥିଲେ । ପ୍ରତ୍ୟେକ ରାଜକୁମାରୀମାନଙ୍କର ଅଗାଧ ବିଦ୍ୟା ଓ ପାଣ୍ଡିତ୍ୟ ଥିଲା । ପ୍ରତ୍ୟେକ ଲୋକର କଣ୍ଠସ୍ଥ କରୁଥିଲେ । କବିତା ରଚନା କରି ସେମାନେ ସାହିତ୍ୟ-ସେବାରେ ମଧ୍ୟ ନିଜେ ଲାଗୁଥିଲେ । ସମ୍ରାଟ୍ ଆକବରଙ୍କର ସ୍ତ୍ରୀ ମାଶ୍‌ଫି (ଅବଗୁଣ୍ଠନବତୀ), ବାବରଙ୍କର କନ୍ୟା ଗୁଲ୍‌ବଦନ, ଔରଙ୍ଗଜେବ୍‌ଙ୍କର କନ୍ୟା ଜେବ୍-ଉନ୍ନିସା ଓ ପ୍ରଥମ ସାହା ଆଲମଙ୍କର କନ୍ୟା ନୁରୁନ୍ନିସା ଏହାର ଜ୍ୱଳନ୍ତ

ନିଦର୍ଶନ*। ଦିଲ୍ଲୀ ଓ ଆଗ୍ରାର ସେହି ମହିମାମୟ ଗୌରବ ଆଜ ଶ୍ମଶାନର ସୈକତରେ ପରିଣତ, କାଳର ସର୍ବଗ୍ରାସୀ ପ୍ରଭାବରେ ବିଶାଳ ମୋଗଲ ସାମ୍ରାଜ୍ୟର ଆଜି ଲେଶମାତ୍ର ଚିହ୍ନ ନାହିଁ—ଅଛି କେବଳ ମଧୁର ମନମୋହନ ସ୍ମୃତି । ମୋଗଲ-ପ୍ରାସାଦର ସୁରମ୍ୟ ଉଦ୍ୟାନରେ ଯେତେ ଅତୁଳନୀୟ ସୌରଭସିକ୍ତ ପ୍ରସୂନ ପ୍ରସ୍ଫୁଟିତ ହୋଇଥିଲା, ସେମାନଙ୍କ ମଧ୍ୟରେ ରମଣୀ-ରତ୍ନ ଶାହାନ୍ ଶାହ ଅରଙ୍ଗଜେବଙ୍କର କନ୍ୟା ଜେବ୍-ଉନ୍ନିସା ପ୍ରଧାନ ।

ମୋଗଲ ସମ୍ରାଟ୍ ଅରଙ୍ଗଜେବ୍‌ଙ୍କର ଜ୍ୟେଷ୍ଠା କନ୍ୟାର ନାମ ଜେବ-ଉନ୍ନିସା । ସମ୍ରାଟ୍-ପତ୍ନୀ ଦିଲରସ୍ ବାନୁ ବେଗମ୍‌ଙ୍କର ଗର୍ଭରେ ଜେବ୍-ଉନ୍ନିସା ୧୬୩୮, ଫେବ୍ରୁଆରୀ, ୧୫ ତାରିଖରେ ଦୌଲତାବାଦରେ ଜନ୍ମଗ୍ରହଣ କରିଥିଲେ । ହାଫିଜା ମରିୟମ୍ ନାମରେ ଜଣେ ବିଦୁଷୀ ମହିଳାଙ୍କ ଉପରେ ଜେବ୍‌ଙ୍କର ଶୈଶବ-ଶିକ୍ଷାର ଭାର ନ୍ୟସ୍ତ ହୋଇଥିଲା । ପିତାଙ୍କ ପରି ଅତି ଶୈଶବରୁ ବିଦ୍ୟା ପ୍ରତି ଜେବ୍‌ଙ୍କର ପ୍ରଗାଢ଼ ଅନୁରାଗ ଥିଲା । ଅସାଧାରଣ ବୁଦ୍ଧି ଓ ପ୍ରତିଭା ଯୋଗୁଁ ସେ ଜନ୍ମ ହୋଇଥିଲେ । ସେ କାଳର ପ୍ରଥାନୁସାରେ ତାଙ୍କୁ ସମସ୍ତ କୋରାନ୍ ମୁଖସ୍ଥ କରିବାକୁ ହୋଇଥିଲା । ଏକେ ପିତାଙ୍କ ନିକଟରେ ସମସ୍ତ କୋରାନ୍ ଅମୃତବର୍ତ୍ତ ଆବୃତ୍ତି କରି ସମ୍ରାଟ୍‌ଙ୍କୁ ଏପରି ବିସ୍ମିତ ଓ ମୁଗ୍ଧ କରି ପକାଇଥିଲେ ଯେ, କନ୍ୟାର ଅନନ୍ୟସାଧାରଣ ଶକ୍ତି ଓ ପ୍ରତିଭା ଦେଖି ଅରଙ୍ଗଜେବ୍ ବାଳିକାକୁ ୩୦,୦୦୦ ସ୍ୱର୍ଣ୍ଣମୁଦ୍ରା ପାରିତୋଷିକ ସ୍ୱରୂପ ପ୍ରଦାନ କରିଥିଲେ †। ପାର୍

---

* Sir Jadunath Sarkar—'Education in Muhammadan India.

† Sarkar—"Studies in Aurengzeb's reign" p. 130.

ଭାଷାରେ ଜେବ୍ ସୁନ୍ଦର ହସ୍ତାକ୍ଷର ଲେଖି ପାରୁଥିଲେ । ଆରବୀ ଓ ପାର୍ସି ଭାଷାରେ ସେ ସମାନ ଭାବରେ ସୁପଣ୍ଡିତା ଥିଲେ । ତାଙ୍କର ପୁସ୍ତକାଗାର ନାନାପ୍ରକାର ସୁନ୍ଦର ଶିକ୍ଷଣୀୟ ପୁସ୍ତକମାନଙ୍କରେ ପୂର୍ଣ୍ଣ ଥିଲା । ଧର୍ମରେ ମଧ୍ୟ ଜେବ୍‌ଙ୍କର ଅସାଧାରଣ ଅନୁରାଗ ଥିଲା । ଅନେକ ସମୟରେ ପିତା ଓ ପୁତ୍ରୀ ଉଭୟେ ବସି ଧର୍ମ ସମ୍ବନ୍ଧରେ ନାନା ତର୍କ-ବିତର୍କ କରି କାଳକ୍ଷେପ କରୁଥିଲେ । ଏହି ଆଲୋଚନା ଉପରେ ଗୁରୁତ୍ୱଥିଲା ତାହା ଜେବ୍-ଉନ୍-ନିସାଙ୍କ ନିକଟକୁ ଲିଖିତ ଆରଙ୍ଗ-ଜେବଙ୍କର ଖଣ୍ଡିଏ ପତ୍ରରୁ ସମ୍ୟକ୍ ଜଣାଯାଏ :—

"ଭଗବାନଙ୍କୁ ବନ୍ଦନା କରି ଓ ପ୍ରେରିତ ପୁରୁଷଙ୍କୁ ପ୍ରଣିପାତ କରି ଏ ପତ୍ର ଲେଖୁଅଛୁ । ଖୋଦାଙ୍କର ଆଶୀର୍ବାଦ ତୁମ୍ଭ ଉପରେ ବର୍ଷିତ ହେଉ । ପୁଣ୍ୟମାସ ରମ୍‌ଜାନ ଆସୁଛି । ପରମେଶ୍ୱର ତୁମ୍ଭ ଉପରେ ଉପବାସର କର୍ତ୍ତବ୍ୟ-ଭାର ଅର୍ପଣ କରିଅଛନ୍ତି । ଏହି ମାସରେ ସ୍ୱର୍ଗଦ୍ୱାର ଉଦ୍‌ଘାଟିତ ଓ ନରକ ଦ୍ୱାର ରୁଦ୍ଧ ହୁଏ । କଳ୍ମଷକାରୀ ସଇତାନ୍‌ମାନେ କାରାବଦ୍ଧ ହୁଅନ୍ତି । ରମଜାନ୍‌ର ଧର୍ମନିୟମାଦିର ପ୍ରତିପାଳନ ନିମନ୍ତେ ଆମ୍ଭେ ଦୁଇ ଜଣ ଯେପରି ଭଗବାନ୍‌ଙ୍କର ଆଶୀର୍ବାଦ ଲାଭ କରିବାକୁ ସମର୍ଥ ହେଉଁ ।

"ବତ୍ସେ ! ତୁମ୍ଭ ଓ ମୋ ମଧ୍ୟରେ ଯେଉଁ ପତ୍ର-ବ୍ୟବହାର ହୁଏ ସେଥିରେ ଯେପରି ଅମ୍ଭମାନଙ୍କର ଆଧ୍ୟାତ୍ମିକ କଲ୍ୟାଣ ସାଧିତ ହୁଏ । ଐହିକ ସୁଖରାଶିର ନିଶାରେ ପ୍ରମତ୍ତ ମୂଢ଼ ମାନବ ପରି ଆମ୍ଭେମାନେ ଆଉ କେତେ କାଳ ପାରତ୍ରିକ ବ୍ୟାପାରରେ ଉଦାସୀନ ହୋଇ, ଭଗବାନ୍‌ଙ୍କର ସାଙ୍ଗରୁ ଦୂରରେ ରହିବା ?

"ଏକମାତ୍ର ଭଗବଦନୁଗ୍ରହହିଁ ଅମ୍ଭମାନଙ୍କୁ ସୁପଥରେ ପରିଚାଳିତ କରିବାର ପ୍ରେରଣା ଦାନ କରିପାରେ । ସେହି ପ୍ରକୃତ

ମହାନ୍ ଈଶ୍ୱର କହୁଅଛନ୍ତି—"ମୁଁ ଜୀବନ ଓ ମୃତ୍ୟୁ ଉଭୟ ସୃଷ୍ଟି କରିଅଛି * ।"

ବିଶାଳ ମୋଗଲ-ସାମ୍ରାଜ୍ୟର ରାଜକୁମାରୀ, ବାଦ୍‌ସାହ ଅରଙ୍ଗଜେବ୍‌ଙ୍କର କନ୍ୟା ଜେବ୍-ଉନିସା ଇଚ୍ଛା କରିଥିଲେ ଅତୁଳ ରାଜ-ବିଭବରେ ଲୋଟୁଥାନ୍ତେ; ସହସ୍ର ସହସ୍ର ଦାସଦାସୀ ଆଜ୍ଞା ପ୍ରମାଣେ ତାଙ୍କର ସଦାସେବା କରୁଥାନ୍ତେ । ଇଚ୍ଛା କରିଥିଲେ ଆକାଶର କୁସୁମ, ନନ୍ଦନର ପାରିଜାତ, ସ୍ୱର୍ଗର ଅମୃତ, ତାଙ୍କ ପାଇଁ ସେହି ମୁହୂର୍ତ୍ତରେ ଅଣାଯାଇ ପାରିଥାନ୍ତା । କିନ୍ତୁ ବିଦ୍ୟାନୁରାଗିଣୀ ମହୀୟସୀ ମହିଳା ସେସବୁ ତୁଚ୍ଛ ଓ ଅସାର ବିଳାସବ୍ୟସନ ବର୍ଜନ କରି ପୁସ୍ତକ-ଅଧ୍ୟୟନରେ, କବିତା-ରଚନାରେ ଓ ଗମ୍ଭୀର ଦାର୍ଶନିକ ତତ୍ତ୍ୱ ଆଲୋଚନାରେ କାଳାତିପାତ କରିବାକୁ ଅତ୍ୟନ୍ତ ସୁଖକର ମଣୁଥିଲେ । ଜ୍ଞାନାନୁଶୀଳନ ଓ ସାହିତ୍ୟଚର୍ଚ୍ଚାକୁ ସେ ଜୀବନର କଠୋର ବ୍ରତ କରିଥିଲେ । ସାହିତ୍ୟର ପୁଷ୍ଟିସାଧନ ନିମନ୍ତେ ତାଙ୍କର ନିଃସ୍ୱାର୍ଥପର କୋମଳ ହୃଦୟ ଓ ହସ୍ତ ସଦାବେଳେ ଉନ୍ମୁକ୍ତ ଥିଲା । ଦୀନ, ଦରିଦ୍ର ଓ ନିଃସ୍ୱ ସାହିତ୍ୟ-ସେବୀମାନଙ୍କର ଅଭାବ ଓ ଦୈନ୍ୟ ଦେଖିଲେ ତାଙ୍କର ଅନ୍ତରାତ୍ମା ଗଭୀର ବ୍ୟଥାରେ ଉଦ୍‌ବେଳିତ ହୋଇ ଉଠୁଥିଲା । ସାହିତ୍ୟର ଉନ୍ନତି ନିମନ୍ତେ ଜେବ୍ ଅନେକ ସୁପଣ୍ଡିତ ମୌଲବୀମାନଙ୍କୁ ଯୋଗ୍ୟ ବେତନ ଦେଇ ପୁସ୍ତକ-ପ୍ରଣୟନ କାର୍ଯ୍ୟରେ ନିଯୁକ୍ତ କରୁଥିଲେ । ଯେଉଁସବୁ ଲେଖକ ତାହାଙ୍କର ଯତ୍ନ ଓ ଚେଷ୍ଟାରେ ଯଶସ୍ୱୀ ହୋଇଥିଲେ, ସେମାନଙ୍କ ମଧ୍ୟରେ ମୁଲ୍ଲା ସଫୀ ଉଦ୍ଦିନ୍‌ଙ୍କର ନାମ ବିଶେଷ ଉଲ୍ଲେଖଯୋଗ୍ୟ । ସାହିତ୍ୟଚର୍ଚ୍ଚାର ସୁବିଧା ନିମନ୍ତେ ସଫୀ ଉଦ୍ଦିନ୍ ଜେବ୍‌ଙ୍କର ଅର୍ଥରେ ପରମ ଆରାମରେ କାଶ୍ମୀରରେ ବାସ କରୁଥିଲେ ।

* "ମୋଗଲ-ବିଦୁଷୀ"—ବ୍ରଜେନ୍ଦ୍ରନାଥ ବନ୍ଦୋପାଧ୍ୟାୟ, ପୃ ୭୪-୭୫ ।

ସେ "ଜେବ୍-ଉଲ୍-ତଫାସି" ନାମରେ କୋରାଣର ଅର୍ବୀ ମହାଭାଷ୍ୟ ଫାର୍ସିରେ ଅନୁବାଦ କରିଥିଲେ । ସଫୀ ଉଦ୍ଦିନ୍ ଗ୍ରନ୍ଥଖଣ୍ଡି ଜେବ୍-ଉନ୍ନିସାଙ୍କର ନାମରେ ପ୍ରସ୍ତୁତ କରିଥିଲେ । ଏହିପରି ଆହୁରି ଅନେକ ଗ୍ରନ୍ଥର ନାମ ଜେବ୍ଙ୍କ ନାମରେ ପରିଚିତ ।

ଅନନ୍ୟସାଧାରଣ ସୌନ୍ଦର୍ଯ୍ୟର ଲୀଳାଭୂମି ଜେବ୍ ଉନ୍ନିସା କେବଳ ଶାରୀରିକ ସୌନ୍ଦର୍ଯ୍ୟରେ ମୋଗଲ ଅନ୍ତଃପୁରକୁ ଆଲୋକିତ କରି ନ ଥିଲେ, ତାଙ୍କର ଅନ୍ତର ମହାପ୍ରାଣ୍ ବିପୁଳ ଗୌରବରାଶିରେ, ଉଦାର ସମ୍ପତ୍ତି ଶନ୍ତିରେ ମଧ୍ୟ ପୂର୍ଣ୍ଣ ଥିଲା । କବିତା-ସୌରଭରେ ଅତନାଶୀ ଭାବ-ରାଶିର ଉଦ୍‌ବେଳ ତରଙ୍ଗରେ ସମସ୍ତ ଜଗତକୁ ତରଙ୍ଗାୟିତ କରି ସେ ଅକ୍ଷୟ କୀର୍ତ୍ତି ଅର୍ଜ୍ଜନ କରିଅଛନ୍ତି । ସେଥି ସକାଶେ ସେ ଅନ୍ତଃପୁରର ନିଭୃତ କକ୍ଷରେ ବସି କବିତା ରଚନା କରୁଥିଲେ, ସାହିତ୍ୟ ସୃଷ୍ଟି କରୁଥିଲେ । ଭାଷା ଜନନୀଙ୍କର ଚିର ସେବିକା ଥିଲେ । ମହାପ୍ରାଣୀ ଜେବ୍ ଉନ୍ନିସାଙ୍କର କବିତାର ଚିହ୍ନ ଆଜି ନାହିଁ—ତାହାର ଆଦର ଲୁପ୍ତ ହୋଇଅଛି । ଇତିହାସର ଉଜ୍ଜ୍ୱଳ ପୃଷ୍ଠାରେ ସେ କବିତାଗୁଚ୍ଛର କ୍ଷୀଣ ସୌରଭଟି କେବଳ ମିଳୁଛି । ସମ୍ରାଟ୍ ଆଉରଙ୍ଗଜେବ୍ କବିତାର ଆଦୌ ପକ୍ଷପାତୀ ନ ଥିଲେ । ସେ ଥିଲେ କଠୋର ନିର୍ମ୍ମମ ନୈଷ୍ଠିକ ମୁସଲମାନ । କବିତାର ନିରଙ୍କୁଶ କଳ୍ପନାର ମଧୁର ପ୍ରବାହକୁ ସେ ଅତି ତୁଚ୍ଛ ଓ ହେୟଜ୍ଞାନ କରୁଥିଲେ । ସମ୍ରାଟ୍ଙ୍କର ଧାରଣା ଥିଲା କବିମାନେ ଅତିରଞ୍ଜନର ଦାସ, କଳ୍ପନାର ସେବକ, ମିଥ୍ୟାବାଦୀ ଓ ଗୃହଭୂତ । ସେଥିପାଇଁ କୌଣସି କବି କଦାପି ସମ୍ରାଟ୍ଙ୍କଠାରୁ ଆଦର ପାଇ ନାହାନ୍ତି । କିନ୍ତୁ ସମ୍ରାଟଙ୍କର ଏ କଠୋର ନିର୍ମ୍ମମତା ସତ୍ତ୍ୱେ ମହାପ୍ରାଣୀ ଜେବ୍ ଉନ୍ନିସା ଯେ କବିତା-କୁଞ୍ଜରେ ବସି କଳ୍ପନା-ଦେବୀଙ୍କର ଆରାଧନା କରିପାରିଥିଲେ, ଏହାହିଁ ବଡ଼ ବିସ୍ମୟର ବ୍ୟାପାର ।

ସେହି ପଣସ୍ୱିନୀ ମହିଳାର ଅନ୍ତିମ ଅବସ୍ଥା ଏପରି ଶୋଚନୀୟ ଓ ମର୍ମଭେଦୀ ହେବ ବୋଲି କିଏ କଳ୍ପନା କରିଥିଲା ? ସମ୍ପୂର୍ଣ୍ଣ ପ୍ରସ୍ଫୁଟିତ ହୋଇ ସ୍ୱରଭିଗୌରବରେ ଜଗତକୁ ଉଦ୍ଭାସିତ କରିବା-ପୂର୍ବରୁ ଅର୍ଦ୍ଧପ୍ରସ୍ଫୁଟିତ ବନ୍ଧାଶୋଲୁଖ ଗୋଲାପକଳିଟି ମଳିନ ହୋଇଯିବ କିଏ ସ୍ୱପ୍ନରେ କଳ୍ପନା କରିଥିଲା ? ଜେବ୍-ଉନ୍‌ନିସାଙ୍କର ବହୁମୂଲ୍ୟ ଜୀବନର ଅଧିକାଂଶ ସମୟ ଅତିବାହିତ ହେଲା ନିର୍ମମ କାରାଗୃହର ଦୁର୍ଭେଦ୍ୟ ପ୍ରାଚୀର ମଧ୍ୟରେ । ମୂର୍ତ୍ତିମତୀ କରୁଣା-ଦେବୀ ଜେବ୍-ଉନ୍‌ନିସା-ଙ୍କର ପ୍ରାଣର ଫଲ୍‌ଗୁଧାରା ସେହି ବନ୍ଦୀଶାଳା ମଧ୍ୟରେ ଶୁଷ୍କ ହୋଇଗଲା । ପିତାଙ୍କର ଅଗ୍ନିବର୍ଷୀ କ୍ରୋଧରୁ ସ୍ନେହମୟୀ ଆଦରଣୀ କନ୍ୟାର ମଧ୍ୟ ମୁକ୍ତି ନ ଥିଲା । ସେହି ପ୍ରଜ୍ୱଳିତ କ୍ରୋଧ-ବହ୍ନିରେ ପତଙ୍ଗ ପରି କେତେ ବ୍ୟକ୍ତି ଯେ ଅକାତର ଭାବରେ ପ୍ରାଣ ଦେଇଅଛନ୍ତି— ସର୍ବସ୍ୱାନ୍ତ ହୋଇଅଛନ୍ତି, ଇତିହାସ ତାହାର ଜ୍ୱଳନ୍ତ ସାକ୍ଷୀ । ସେହି ସର୍ବଗ୍ରାସୀ ଅଗ୍ନିରେ ଆଦରଣୀ କନ୍ୟା ଜେବ୍-ଉନ୍‌ନିସାଙ୍କୁ ଝାସ ଦେବାକୁ ହେବ—ଏ କଥା କିଏ କେବେ କଳ୍ପନା କରିଥିଲା ?

ସମ୍ରାଟ୍ ଆରଙ୍ଗଜେବ୍ ଥିଲେ ବଡ଼ ସନ୍ଦେହୀ । ସେହି ସନ୍ଦେହର ବଶବର୍ତ୍ତୀ ହୋଇ ବାଦ୍‌ସାହ୍ ନିଜର ଆଦରଣୀ କନ୍ୟାକୁ କାରାଗାରରେ ନିକ୍ଷେପ କରିଥିଲେ । ଜେବ୍-ଉନ୍‌ନିସା ଭ୍ରାତା ମହମ୍ମଦ ଅକବରଙ୍କୁ ସର୍ବଦା ସ୍ନେହ-ଚକ୍ଷୁରେ ଦେଖୁଥିଲେ । ଜ୍ୟେଷ୍ଠା ଭଗିନୀଙ୍କ ପ୍ରତି ଅକବରଙ୍କର ମଧ୍ୟ ଅଗାଧ ବିଶ୍ୱାସ, ଅପରିସୀମ ଶ୍ରଦ୍ଧା ଓ ଭକ୍ତି ଥିଲା । ଅକବର ଥରେ ଖଣ୍ଡିଏ ପତ୍ର ଜେବ୍-ଉନ୍‌ନିସାଙ୍କ ନିକଟକୁ ଲେଖିଥିଲେ । ସେଥିରେ ଲେଖାଥିଲା :—

"ଯାହା ତୁମ୍ଭର, ତାହା ମୋର । ଯାହା ମୋହର ସେଥିରେ ସଦାବେଳେ ତୁମ୍ଭର ଅଧିକାର ଅଛି । × × × ସବୁ ବିଷୟରେ

ତୁମ୍ଭର ଆଦେଶ ମୁଁ ତୋଷଣ ଓ 'ସ୍ୱୈରିତ-ପୁରୁଷ'ଙ୍କର ଆଦେଶ ପରି ପବିତ୍ର ମନେକରି ପ୍ରତିପାଳନ କରିବ * ।"

ଏହି ଅକୃତ୍ରିମ ଭ୍ରାତୃସ୍ନେହ ଜେବ୍‌ଙ୍କର କାଳସ୍ୱରୂପ ହେଲା । ଔରଙ୍ଗଜେବଙ୍କର ଏହି ଭଗିନୀ ସ୍ନେହ ଜେବ୍‌ଙ୍କର ମରଣକୁ ହେଲା ।

ଅକବର ପିତାଙ୍କ ବିରୁଦ୍ଧରେ ବିଦ୍ରୋହ ଆରମ୍ଭ କଲେ † । ବିଦ୍ରୋହ ପୂର୍ବରୁ ଜେବ୍ ଉନିସା ଭ୍ରାତାଙ୍କ ନିକଟକୁ ଯେଉଁ ସବୁ ପତ୍ର ଲେଖିଥିଲେ ସେସବୁ କୌଶଳକ୍ରମେ ବାଦ୍‌ସାହଙ୍କର ହସ୍ତଗତ ହେଲା । ଅକବର ଶିବିର ପରିତ୍ୟାଗ କରି ପ୍ରାଣଭୟରେ ପଳାଇଗଲେ । ସୁତରାଂ ବାଦ୍‌ସାହଙ୍କର କ୍ରୋଧବହ୍ନିର ସାମଗ୍ରୀ ହେଲେ ଜେବ୍-ଉନିସା । ଘୋର ଅପରାଧ—ସମ୍ରାଟଙ୍କ ବିରୁଦ୍ଧରେ ଷଡ଼ଯନ୍ତ୍ରରେ ଲିପ୍ତ । ସୁତରାଂ ଜେବଙ୍କର ଆଉ ରକ୍ଷା ନାହିଁ । କ୍ରୋଧାନ୍ଧ ବାଦ୍‌ସାହ କନ୍ୟାର ସମସ୍ତ ସମ୍ପତ୍ତି ବାଜେୟାପ୍ତ କଲେ ଏବଂ ବାର୍ଷିକ ଚାରି ଲକ୍ଷ ଟଙ୍କାର ବୃତ୍ତି ବନ୍ଦ କରି ତାହାଙ୍କୁ ଆମରଣ (୧୬୮୧-୧୭୦୨) ଦିଲ୍ଲୀର ସଲିମ୍‌ଗଡ଼ରେ ବନ୍ଦୀ କରି ରଖିଲେ ‡ ।

ସ୍ନେହମୟୀ ଆଦରିଣୀ କନ୍ୟା ଜେବ୍-ଉନିସା ପିତାଙ୍କ ବିରୁଦ୍ଧରେ ବାସ୍ତବିକ ଓ କପଟ ଷଡ଼ଯନ୍ତ୍ରରେ ଲିପ୍ତ ହେଲେ—ଇତିହାସ ଏପର୍ଯ୍ୟନ୍ତ ଏ କୁହେଳିକା ଭେଦ କରି ପାରିନାହିଁ । କାରାପ୍ରାଚୀରର ନିର୍ମମ ଆବେଷ୍ଟନ ମଧ୍ୟରେ ସେହି ନିରାଶ୍ରୟ ନିର୍ଜ୍ଜନ ଓ ନିଃସଙ୍ଗ

* ମୋଗଲ-ବିଦୁଷୀ—ବ୍ରଜେନ୍ଦ୍ର ବନ୍ଦୋପାଧ୍ୟାୟ—ପୃ ୭୮

† Studies in Aurangzib's reign—Sarkar, p. 93 (Muhammad Akbar)

‡ "× × Here (fort of Salimgarh) she lived till her death on 26th May, 1702"—Sarkar, Studies in Aurangjib's reign, p. 139.

ଅବସ୍ଥାରେ ଜେବ୍‌ଙ୍କର କବିତାର ମଧୁର ବନ୍ୟା ମଧ୍ୟ ପ୍ରବାହିତ ହେବାକୁ ଲାଗିଲା । ଏହି ବନ୍ଦୀଶାଳାରେ ସେ ଲେଖିଥିଲେ—

"କଠିନ ନିଗଡ଼େ ବନ୍ଧ, ଯେତେବେଳେ ଚରଣ-ଯୁଗଳ,
ବନ୍ଧୁ ସବୁ ବୈରୀ ମମ, ପର ଆତ୍ମୀୟ ସକଳ,

× × ×
× × ×

ଏ ବିଷାଦ-କାରାଗାରୁ ମୁକ୍ତ ହେବା ବୃଥା ଚେଷ୍ଟା ମୋର,
ରାଜଚକ୍ର ନିଦାରୁଣ, ଉପର କଠୋର ।

ଜାଣି ରଖ ବନ୍ଦୀ ବୃଦ୍ଧ, ଶେଷ ଦିନ ନ ଆସିଲେ ତୋର
ନାହିଁ ନାହିଁ ଆଶା ନାହିଁ ନ ଖୋଲିବ ଲୌହକାରାଗାର *।"

ନାରୀ-କବିଙ୍କର କବିତା ବାସ୍ତବରେ ତାଙ୍କର ଜୀବନରେ ଫଳବତୀ ହୋଇଥିଲା । ସେହି ପାଷାଣପ୍ରାଚୀର, ସେହି ନିର୍ମମ ନିଦାରୁଣ ଲୌହ କାରାଗାର ଆଉ ତାଙ୍କପାଇଁ ମୁକ୍ତ ହୋଇ ନାହିଁ । ଯେଉଁ ଦିନ ସେହି ପ୍ରକାଣ୍ଡ ଲୌହ କବାଟ ଉନ୍ମୁକ୍ତ ହେଲା ସେଦିନ ମହୀୟସୀ ଜେବ୍-ଉନ୍ନିସା ଏ ମର୍ତ୍ତ୍ୟ ସଂସାରର ମାନବୀ ନ ଥିଲେ, ସେ ଥିଲେ ସ୍ୱର୍ଗର ଦେବୀ । ସେହି କାରାଗାରର ନିଭୃତ କୋଣରେ ଜେବ୍-ଉନ୍ନିସା ୧୭୦୨ ଖ୍ରୀଷ୍ଟାବ୍ଦ, ମେ ମାସ ୨୬ ତାରିଖରେ ଦେହତ୍ୟାଗ କଲେ । ମୃତ୍ୟୁ ସମୟକୁ ଜେବଙ୍କର ବୟସ ହୋଇଥିଲା ମୋଟେ ୬୩ । ତାଙ୍କର ମୃତ୍ୟୁ ସମ୍ବାଦରେ ଆବାଳବୃଦ୍ଧବନିତା ସମସ୍ତେ ସମସ୍ୱରରେ କାନ୍ଦି ଉଠିଲେ । ରାଜନୀତିର କୁଟିଳ ଚକ୍ରରେ ଅପତ୍ୟସ୍ନେହ ଭୁଲି ଯେଉଁ ବାଦ୍‌ଶାହ ଜେବଙ୍କର ଅକାଳମୃତ୍ୟୁର

---

* 'ମୋଗଲ-ବନ୍ଦିନୀ'—ଶ୍ରୀ ବ୍ରଜେନ୍ଦ୍ର ବନ୍ଦ୍ୟୋପାଧ୍ୟାୟ, ପୃ ୭୦,
Sarkar—"Studies in Aurangjib's reign." p. 139.

କାରଣ ହୋଇଥିଲେ ତାଙ୍କର ପାଷାଣବକ୍ଷୁ ଫାଟି ଅଶ୍ରୁବିନ୍ଦୁ ଝରି ପଡ଼ନ୍ତା । ପ୍ରତିଭା-ବିକାଶର ଯଥେଷ୍ଟ ଅବସର ପାଇଥିଲେ ଜେବ୍‌-ଉନ୍-ନିସା ଯେ ଆଜି ଜଣେ ସମଗ୍ର ଭାରତରେ ପ୍ରଧାନ ନାୟିକାରୂପେ ପରିଗଣିତ ହୋଇଥାନ୍ତେ, ଏଥିରେ କାହାର ମତଦ୍ୱୈଧ ହୋଇ ନ ପାରେ । ଜେବଙ୍କର ଅନ୍ତ୍ୟେଷ୍ଟିକ୍ରିୟା ମହାସମାରୋହରେ ଅନୁଷ୍ଠିତ ହୋଇଥିଲା । ସେ ସମାଧି-ଭବନର ବର୍ତ୍ତମାନ ଚିହ୍ନ ମାତ୍ର ନାହିଁ । ରାଜପୁତନା-ରେଲପଥ ନିର୍ମାଣ ସମୟରେ ତାଙ୍କର କବରଟି ବିନଷ୍ଟ ହୋଇଗଲା * ।

ଇତିହାସ ମାନବ-ସମାଜର ସାଧାରଣ କୋଷାଗାର । ଏହାର ଅକ୍ଷୟ ଓ ଅନନ୍ତ ଭଣ୍ଡାର ଉପରେ କଳ୍ପନାଜୀବୀ କବି, ଦାର୍ଶନିକ ଓ ଐତିହାସିକ ସମସ୍ତଙ୍କର ସମାନ ଅଧିକାର, ସମାନ ଦାବୀ । କିନ୍ତୁ ବାସ୍ତବରେ ଯାହା ଐତିହାସିକ ଘଟନା ନୁହେ, ତାକୁ କଳ୍ପନା-ତୂଳିକାରେ ଅତିରଞ୍ଜିତ କରି ସତ୍ୟର ଅପଳାପ କରିବା କବିର କରଣୀୟ ନୁହେ । କବିର କାବ୍ୟରେ କିମ୍ବା ଔପନ୍ୟାସିକର ଉପନ୍ୟାସରେ କିମ୍ବା ନାଟକ ଲେଖକର ନାଟକରେ ଐତିହାସିକ ଘଟନା ଓଜଜୀବ୍ୟ ବିଷୟ ହୋଇଥିବାର ଦେଖିଲେ ସେ କଳ୍ପନାକୁ ବଡ଼ ସାବଧାନତାର ସହିତ ଗ୍ରହଣ କରିବାକୁ ହେବ । କବି-କୁଳତିଳକ ପ୍ରାତଃସ୍ମରଣୀୟ କାଳିଦାସଙ୍କର ନିଷ୍କଳଙ୍କ ଚରିତ୍ରରେ କବିମାନେ ଯେପରି ନାନାପ୍ରକାର କଳଙ୍କ ଆରୋପ କରିଅଛନ୍ତି, ସେହିପରି କୌଣସି କୌଣସି କଳ୍ପନାପ୍ରିୟ ଲେଖକ ଜେବ-

* " × × but her tomb was demolished in making the Rajputna railway line"—Sir J. N. Sarkar.

ସାଧାରଣଙ୍କର ଚିତ୍ତ-ବିନୋଦନ ନିମନ୍ତେ ନିଷ୍ଠାବତୀ, ଚରିତ୍ରବତୀ, ଆଜୀବନ କୁମାରୀ ମହାପ୍ରାଣୀ ଜେବ୍-ଉନ୍ନିସାଙ୍କର ପବିତ୍ର ଚରିତ୍ରରେ କଳଙ୍କ ଆରୋପ କରିଅଛନ୍ତି । ଅନିନ୍ଦ୍ୟସୁନ୍ଦରୀ, ଚିରବସନ୍ତଲୀଳାୟିତ ରାଜପ୍ରାସାଦର ପ୍ରସ୍ଫୁଟିତ ଗୋଲାପ, ସମଗ୍ର ଭାରତର ସାହାନ୍‌ଶାହ୍ ଆଉରଙ୍ଗଜେବଙ୍କର କନ୍ୟା ଜେବ୍-ଉନ୍ନିସାଙ୍କୁ ଅବୈଧ ଭିତ୍ତିଶୂନ୍ୟ ପ୍ରେମ-କାହାଣୀର ନାୟିକା ନ କରି ଆଉ କାହାକୁ ଅବଲମ୍ବନ କରି କବିମାନେ କାବ୍ୟ ସୃଷ୍ଟି କରନ୍ତେ ? କେବଳ ଜେବ୍-ଉନ୍ନିସା କାହିଁକି, ଜାହାନାର, ରାଜପୁତରମଣୀ ପଦ୍ମିନୀ ଓ ଆଉ ଅନେକ ଇତିହାସ ପ୍ରସିଦ୍ଧା ନିଷ୍କଳଙ୍କଚରିତ୍ରା ନାରୀମାନଙ୍କର ସୌନ୍ଦର୍ଯ୍ୟର ସୁଯୋଗ ନେଇ କଳ୍ପନାଜୀବୀ କବିମାନେ ସେମାନଙ୍କର ପବିତ୍ର ବନ୍ଦନୀୟ ଚରିତ୍ରକୁ ମଳୀମସ କରି ଯାଇଅଛନ୍ତି ।

ଜେବ୍-ଉନ୍ନିସାଙ୍କ ସମ୍ବନ୍ଧରେ ପ୍ରଚଳିତ ଅବୈଧ ପ୍ରେମ-କାହାଣୀର ନାୟକ ଆକିଲଖାଁ ଏବଂ ନାୟିକା ସ୍ୱୟଂ ଜେବ୍ । ଏହି କଳଙ୍କ କାହାଣୀ ମୂଳରେ କୌଣସି ଐତିହାସିକ ସତ୍ୟ ଅଛି କି ନାହିଁ ତାହା ଦେଖିବାର ବିଷୟ । ଜେବ୍-ଉନ୍ନିସାଙ୍କର ଏହି ପ୍ରଣୟ କାହାଣୀର ଉଲ୍ଲେଖ ତାହାଙ୍କ ପିତାଙ୍କ ରାଜତ୍ୱ-କାଳରେ ରଚିତ କୌଣସି ଇତିହାସରେ କିମ୍ବା ତାଙ୍କ ମୃତ୍ୟୁର ଏକଶତ ବର୍ଷ ମଧ୍ୟରେ ଲିଖିତ କୌଣସି ଇତିହାସରେ ନାହିଁ । ସରକାରୀ ଇତିହାସରେ କିମ୍ବା ଅନ୍ୟାନ୍ୟ ରାଜକର୍ମଚାରୀପ୍ରଣୀତ ଗ୍ରନ୍ଥରେ ଅବଶ୍ୟ ଏହି କଳଙ୍କକାହାଣୀ ସ୍ଥାନ ନ ପାଇବାର କଥା । କିନ୍ତୁ ବେସରକାରୀ ଇତିହାସମାନଙ୍କରେ ଏ କଳଙ୍କ-କାହାଣୀ ସ୍ଥାନ ନ ପାଇବାର କୌଣସି ଯୁକ୍ତିଯୁକ୍ତ କାରଣ ନାହିଁ । ଏହି ଶ୍ରେଣୀର ଐତିହାସିକ-ମାନଙ୍କ ମଧ୍ୟରେ ଭୀମସେନ ଓ ଈଶ୍ୱର ଦାସ ନାଗର ଦୁଇ ଜଣ ହିନ୍ଦୁ-ଲେଖକଙ୍କର ନାମ ବିଶେଷ ଭାବରେ ଉଲ୍ଲେଖଯୋଗ୍ୟ ।

ଏହି ଦୁଇ ହିନ୍ଦୁ ଐତିହାସିକ ମୁସଲମାନ ମୋଗଲ ରାଜ-ଦରବାର ସମ୍ବନ୍ଧରେ କୌଣସି କଥା ଲୁଚାଇ ରଖି ନାହାନ୍ତି। କିନ୍ତୁ ଜେବ୍-ଉନ୍-ନିସାଙ୍କର ପ୍ରେମକାହାଣୀ ବର୍ଣ୍ଣନାରେ ସେମାନଙ୍କ ରଚିତ ଇତିହାସ ନୀରବ। ମୁସଲମାନ ଐତିହାସିକ ଖାଫିଖାଁ ଆରଙ୍ଗଜେବଙ୍କ ମୃତ୍ୟୁର ୨୫ ବର୍ଷ ପରେ ତାଙ୍କର ଇତିହାସ ପ୍ରକାଶିତ କରିଥିଲେ। ଏହାଙ୍କର ସ୍ୱାଧୀନ, ନିର୍ଭୀକ ଲେଖନୀ ଜାହାଙ୍ଗୀର ଓ ନୁରଜାହାନ-ଙ୍କର ଲଜ୍ଜାଜନକ କାହାଣୀ ଅସଙ୍କୋଚ ଭାବରେ ଉଦ୍ଧାର କରିଅଛନ୍ତି; କିନ୍ତୁ ଜେବ୍-ଉନ୍-ନିସାଙ୍କ ଚରିତ୍ରରେ ବିନ୍ଦୁ ମାତ୍ର କଳଙ୍କ ନିକ୍ଷେପ କରି ନାହିଁ। ସେପରି କିଛି କଳଙ୍କର କଥା ଜେବ୍-ଉନ୍-ନିସାଙ୍କର ଚରିତ୍ରରେ ଥିଲେ ଖାଫୀଖାଁ ତାହା ଉଲ୍ଲେଖ ନ କରି ରହିଁ ନ ଥାନ୍ତେ। ଇଉରୋପୀୟ ପର୍ଯ୍ୟଟକ ବାର୍ଣ୍ଣିୟର୍ ଓ ମାନୁଚୀଙ୍କର ଭ୍ରମଣ-କାହାଣୀରେ ଏହି କଳଙ୍କକାହାଣୀର ଚିହ୍ନ ମାତ୍ର ଦେଖିବାକୁ ମିଳେ ନାହିଁ। ବୈଦେଶିକ ପର୍ଯ୍ୟଟକମାନଙ୍କର ଆରଙ୍ଗଜେବ କିମ୍ବା ତାଙ୍କର ଉତ୍ତରାଧିକାରୀମାନଙ୍କର କ୍ରୋଧଭାଜନ ହେବାର କୌଣସି ଭୟ ନ ଥିଲା। ଇଚ୍ଛା କରିଥିଲେ ସେମାନେ ନିର୍ଭୀକଭାବରେ ଜେବଙ୍କର ପ୍ରେମ-କାହାଣୀ ସୁନ୍ଦରଭାବରେ ବର୍ଣ୍ଣନା କରିପାରିଥାନ୍ତେ। ମାନୁଚୀ ସ୍ୱରଚିତ 'ମୋଗଲଇତିହାସ'ରେ ମୋଗଲ-ଦରବାର ଓ ରାଜ-ପ୍ରାସାଦ ସମ୍ବନ୍ଧରେ ଅନେକ କୁତ୍ସା ରଚନା କରିଅଛନ୍ତି। ଜେବ୍-ଉନ୍-ନିସାଙ୍କର ପ୍ରେମକାହାଣୀର ଚିହ୍ନ ସୁଦ୍ଧା ମାନୁଚୀଙ୍କର ଇତିହାସରେ ନାହିଁ। ସେ ଇଚ୍ଛା କରିଥିଲେ ତିଳକୁ ତାଳ କରି ପାରିଥାନ୍ତେ; କାରଣ ମୋଗଲ-ସାମ୍ରାଜ୍ୟର ସମସ୍ତ କଥା ସେମାନେ ବୈଦେଶିକର ଦୃଷ୍ଟିରେ ଦେଖୁଥିଲେ। ଜେବ୍-ଉନ୍-ନିସାଙ୍କର ଏହି ପ୍ରଣୟକାହାଣୀରେ କିଛି ନା କିଛି ସତ୍ୟ ଥିଲେ ଅନ୍ତତଃ ଏହି ବୈଦେଶିକ ପର୍ଯ୍ୟଟକମାନେ ତାହାର ଉଲ୍ଲେଖ କରିଥାନ୍ତେ। କିନ୍ତୁ ତାହା ସେମାନେ କରି ନାହାନ୍ତି,

ଅମ୍ଭମାନଙ୍କୁ ବିଶ୍ୱାସ କରିବାକୁ ହେବ ଏହି କାହାଣୀରେ କୌଣସି ଐତିହାସିକ ସତ୍ୟ ନାହିଁ । ଏହା ସମ୍ପୂର୍ଣ୍ଣ ଅଲୀକ, ଭିତ୍ତିହୀନ ଏବଂ କବିର ଅସାର କଳ୍ପନା ମାତ୍ର * ।

ଜେବ୍‌-ଉନ୍ନିସାଙ୍କର ଅବୈଧ ପ୍ରେମର ଏହି କଳଙ୍କ-କାହାଣୀ ଜନୈକ ଗଢ଼ାଧିର ଉର୍ଦ୍ଦୁଲେଖକମାନଙ୍କର କୀର୍ତ୍ତି । ସମ୍ଭବତଃ ଲକ୍ଷ୍ନୌ ସହରରେ ଏହାର ପ୍ରଥମ ସୃଷ୍ଟି । ସେହି ପ୍ରଣୟକାହାଣୀର ସଂକ୍ଷିପ୍ତ ବିବରଣୀଟି ଏହି :—

"୧୬୬୨ ଖ୍ରୀଷ୍ଟାବ୍ଦର ପ୍ରାରମ୍ଭରେ ମୋଗଲ-ବାଦସାହ ଆରଙ୍ଗଜେବ୍ ଅସୁସ୍ଥ ହୋଇ ପଡ଼ିଲେ । ଚିକିତ୍ସକମାନେ ଜଳବାୟୁ ପରିବର୍ତ୍ତନର ପରାମର୍ଶ ଦେବାରୁ ବାଦସାହ ପରିବାର, ପରିଜନ ଓ ପାରିଷଦବର୍ଗ ସହ ଲାହୋରକୁ ଯାତ୍ରା କଲେ । ସେହି ସମୟରେ ତାଙ୍କର ଉଜୀର-ପୁତ୍ର ଅକିଲ ଖାଁ ସେହି ନଗରର ସୁବାଦାର ଥିଲେ । ତାଙ୍କର ଯେପରି ରୂପ, ସେପରି ଗୁଣ । କବିତ୍ୱରେ ମଧ୍ୟ ତାଙ୍କର ଯଥେଷ୍ଟ ଖ୍ୟାତି ଥିଲା । ଲାହୋରରେ ବହୁଦିନ ପରେ ମଣିକାଞ୍ଚନର ସୁଯୋଗ ହେଲା । ଜେବ୍-ଉନ୍ନିସାଙ୍କର ଅସାମାନ୍ୟ ସୌନ୍ଦର୍ଯ୍ୟର କଥା ଅକିଲ ବହୁ ପୂର୍ବରୁ ଶୁଣିଥିଲେ । ଅଧୀର ବ୍ୟାକୁଳତାରେ ତାଙ୍କର ହୃଦୟ ଅସ୍ଥିର ହୋଇଥିଲା । ଆଜି ସେହି ସୁନ୍ଦରର ବସ୍ତୁ ଅତି ନିକଟ-ବର୍ତ୍ତୀ । ଅକିଲଙ୍କର ବ୍ୟାକୁଳ ମନ ଆଉ ସ୍ଥିର ହୋଇ ରହି ନ ପାରେ । ନଗରରକ୍ଷା ଛଳରେ ସେ ଅଶ୍ୱାରୋହଣ କରି ରାଜପ୍ରାସାଦର ଚତୁର୍ଦ୍ଦିଗ ପରିଭ୍ରମଣ କରିବାକୁ ଆରମ୍ଭ କଲେ । ଉଦ୍ଦେଶ୍ୟ— ଯଦି ଥରେ ଜେବ୍‌ଙ୍କର ସେହି ସୁମଧୁର ସୌନ୍ଦର୍ଯ୍ୟ-ସୁଧା ପାନ କରି

* Sarkar—"Studies in Aurangzeb's reign, p. 132. ବ୍ରଜେନ୍ଦ୍ର ବନ୍ଦ୍ୟୋପାଧ୍ୟାୟ—"ମୋଗଲ ବଧୂଣୀ"—p. 78.

ସନ୍ତପ୍ତ ପ୍ରାଣକୁ ଶୀତଳ କରିପାରନ୍ତି । ସେ ସୁଯୋଗ ଦିନେ ଆସିଲା । ଦିନେ ସକାଳେ ତାଳମ୍ବଫୁଲର ବର୍ଣ୍ଣ ପରି ସୁନ୍ଦରବସ୍ତ୍ରଶୋଭିତ ବାଦ୍‌ସାହକନ୍ୟା ପ୍ରାସାଦଶିରେ ଦଣ୍ଡାୟମାନ ହୋଇଥିଲେ । ଗୁହି ଚକ୍ଷୁର ମିଳନ ହେଲା ।

"ତତ୍ପରେ ଚାରି ପ୍ରଣୟର ମୃଗବନ୍ଧ ପଦ୍ୟରେ ଆରମ୍ଭ ହେଲା । ଅକିଲ୍ ପ୍ରେମପିପାସୁ କଣ୍ଠରେ କହିଲେ—'ପ୍ରାସାଦ ଉପରେ ରକ୍ତିମ ସ୍ୱର୍ଣ୍ଣପ୍ରତିମା ପ୍ରକାଶ ପାଇଲା ।' ଜେବ୍‌ଉନ୍ନିସା ଜବାବ୍ ଦେଲେ—'ଅନୁନୟ ବିନୟ, ଜୋର ଜବରଦସ୍ତି ବା ସ୍ୱର୍ଣ୍ଣମୁଦ୍ରା କୌଣସିଥିରେ ଏ ପ୍ରତିମା ଲବ୍ଧ ହେବାର ନୁହେ ।'

"ଲାହୋର ଜେବ୍‌ଉନ୍ନିସାଙ୍କର ମନୋମତ ସ୍ଥାନ । ଏହି ସ୍ଥାନରେ ତାଙ୍କର ଗୋଟିଏ ଉଦ୍ୟାନ ଥିଲା । ଦିନେ ସଖୀମାନଙ୍କ ସହିତ ଜେବ୍ ଉଦ୍ୟାନରେ ଗୋଟିଏ ମର୍ମରଗୃହର ନିର୍ମାଣକାର୍ଯ୍ୟ ଦେଖିବାକୁ ଆସିଲେ, ଅକିଲ୍ ମିସ୍ତ୍ରୀ ବେଶରେ ମୁଣ୍ଡରେ ଚୂନ-ସୁରକୀର ହାଣ୍ଡି ଧରି ସେଠାରେ ହାଜର । ଏହି ଛଦ୍ମବେଶ ଧରି ପ୍ରେମିକ ଅକିଲ୍ ପ୍ରହରୀମାନଙ୍କର ଚକ୍ଷୁରେ ଧୂଳି ଦେଇ ଉଦ୍ୟାନ ମଧ୍ୟରେ ଉପସ୍ଥିତ । ଅକିଲ୍ ଜେବ୍‌ଙ୍କୁ ଭାରି କରୁଣ ସ୍ୱରରେ କହିଲେ, 'ତୁମ୍ଭର ଆଶାରେ ମୁଁ ଚୂନ ଲୁଣା ପରି ସାରା ମୁହଁବା ଧୂଳି ବୁଲୁଛି ।' ଜେବ କହିଲେ, 'ତୁମ୍ଭେ ବାୟୁର ଆକାର ଧାରଣ କଲେ ମଧ୍ୟ ମୋର କେଶାଗ୍ର ସ୍ପର୍ଶ କରିପାରିବ ନାହିଁ ।'

ଅକିଲ୍‌ଙ୍କ ସହିତ ଜେବଙ୍କର ଘନ ଘନ ସାକ୍ଷାତ ହେବାକୁ ଲାଗିଲା । ଏ ସବୁ କଥା କେତେ କାଳ ଗୋପନରେ ରହିପାରେ ? ଏହି ଜନରବ ଦାକ୍ଷୀକୁ ପାଇ ଅରଙ୍ଗଜେବ୍‌ଙ୍କ କାନରେ ବାଜିଲା । ବାଦସାହ କାଳବିଳମ୍ବ ନ କରି ଲାହୋରରେ ଉପସ୍ଥିତ । ସ୍ଥିର ହେଲା

—ଅବିଳମ୍ବେ କନ୍ୟାର ବିବାହ ଦେଇ ଏହି କଳଙ୍କର ଅବସାନ କରିବାକୁ ହେବ । କନ୍ୟା ପିତାଙ୍କୁ ଜଣାଇ ଦେଲେ ଯେ ସେ ବିବାହ କରିବେ; ଅତଏବ ଯେଉଁମାନେ ତାଙ୍କର ପ୍ରଣୟପ୍ରାର୍ଥୀ ସେମାନେ ଯେପରି ତାଙ୍କ ନିକଟକୁ ନିଜ ନିଜର ଛବି ଅବିଳମ୍ବେ ପଠାନ୍ତି । ସମସ୍ତଙ୍କର ପ୍ରତିକୃତି ଦେଖି ଜେବ୍ ଆକିଲଙ୍କୁ ସ୍ୱାମୀତ୍ୱରେ ବରଣ କରିବାକୁ ସଂକଳ୍ପ କଲେ । ତଦନୁସାରେ ଆରଙ୍ଗଜେବ୍ ଆକିଲଙ୍କୁ ଡାକି ପଠାଇଲେ । କିନ୍ତୁ ଜେବ୍-ଉନ୍ନିସାଙ୍କର ଜଣେ ସ୍ୱାର୍ଥପ୍ରେମିକ ଇତିମଧ୍ୟରେ ଗୋଟିଏ ବଡ଼ ଗୋଳ ଲଗାଇ ଦେଲେ । ସେ ଆକିଲଙ୍କୁ ମିଥ୍ୟାରେ ଲେଖି ପଠାଇଲେ, 'ସମ୍ରାଟ୍-କନ୍ୟାର ପ୍ରଣୟପାତ୍ର ହେବା ପିଲା ଖେଳ ନୁହେ । ବାଦସାହ ସମସ୍ତ ଘଟଣା ଜାଣନ୍ତି । ତୁମ୍ଭର ମୃତ୍ୟୁ ସୁନିଶ୍ଚିତ ।' ଏହି ପତ୍ର ପଢ଼ି ଆକିଲଙ୍କର ଧାରଣା ହେଲା ବାଦସାହ ନିଶ୍ଚୟ ତାହାଙ୍କୁ କଠୋର ଦଣ୍ଡ ଦେବେ । ଏଥିରେ ତାଙ୍କର ଏତେ ଭୟ ହେଲା ଯେ ସେ ଜେବ୍‌ଙ୍କ ସହିତ ପ୍ରସ୍ତାବିତ ବିବାହରେ ଅସମ୍ମତ ହୋଇ ବାଦସାହଙ୍କ ନିକଟକୁ ପରିତ୍ୟାଗ-ପତ୍ର ପଠାଇ ଦେଲେ ।

"କିନ୍ତୁ ହତଭାଗ୍ୟ ଆକିଲଖାଁ ଜେବଙ୍କୁ ବିସ୍ମୃତ ହୋଇ ପାରିଲେ ନାହିଁ । ତାହାଙ୍କୁ ଦେଖିବା ନିମନ୍ତେ ପୁନର୍ବାର ଗୋପନରେ ସେ ଦିଲ୍ଲୀକୁ ଆସିଲେ । ପୁନର୍ବାର ଉଦ୍ୟାନ-ବାଟିକାରେ ଉଭୟଙ୍କର ମଧୁର ମିଳନ ! ସମ୍ବାଦ ପାଇ ବାଦସାହ ଅକସ୍ମାତ୍ ଭ୍ରମଣର କନ୍ୟା ନିକଟରେ ଉପସ୍ଥିତ ହେଲେ । ପିତାଙ୍କୁ ଆସିବାର ଦେଖି ଜେବ୍ ପ୍ରେମିକଙ୍କୁ ଅବିଳମ୍ବେ ଗୋଟିଏ ବଡ଼ ଡେକ୍‌ଚିରେ ଲୁଚାଇ ରଖିଲେ । କିନ୍ତୁ ଚତୁର-ଚୂଡ଼ାମଣି ବାଦ୍‌ସାହଙ୍କ ଚକ୍ଷୁରେ ଧୂଳି ଦେବା ଅସମ୍ଭବ । ସେ ପଚାରିଲେ, 'ଏହି ଡେକଚିରେ କିଏ ?' ଜେବ୍ କହିଲେ, 'ଗରମ କରିବାର ଜଳ ।' ବାଦ୍‌ସାହ ହୁକୁମ

ଦେଲେ, 'ଅଗ୍ନି ଲଗାଇ ଜଳ ଗରମ କର ।' ତତ୍‌କ୍ଷଣାତ୍ ବାଦ୍‌ସାହଙ୍କର ହୁକୁମ ତାମିଲ କରାଗଲା । ଜେବ ଏହି ସମୟରେ ସ୍ୱୀୟ ପ୍ରେମିକର ଜୀବନ ଅପେକ୍ଷା ଆପଣାର ସମ୍ମାନ ରକ୍ଷା କରିବା ନିମନ୍ତେ ବଡ଼ ବ୍ୟାକୁଳ ହୋଇ ପଡ଼ିଲେ । ଡେକ୍‌ଚି ନିକଟକୁ ଆସି ଚୁପ୍‌କରି ଅକିଲଙ୍କୁ କହିଲେ, 'ଯଦି ବାସ୍ତବିକ ତୁମ୍ଭେ ମୋତେ ପ୍ରେମକର, ତାହାହେଲେ ମୌନୀ ହୋଇ ମୋର ପ୍ରାଣ ରକ୍ଷାକର ।' ଅକିଲଖାଁ ଅନଳରେ ସିଦ୍ଧ ହୋଇ ତାହାଙ୍କର ଗଭୀର ଅକୃତ୍ରିମ ପ୍ରେମର ପରୀକ୍ଷା ଦେଲେ । ଏହି ଅବୈଧ ପ୍ରେମ ନିମନ୍ତେ ଜେବ୍-ଉନ୍ନିସା ସାଲିମ ଗଡ଼ ଦୁର୍ଗରେ ବନ୍ଦୀ ହେଲେ ।"

ପାଠକପାଠିକାମାନଙ୍କର ମନୋରଞ୍ଜନ ଓ ଚିତ୍ତବିନୋଦନ ନିମନ୍ତେ ଏହି ପ୍ରେମ-କାହାଣୀଟିର ସୃଷ୍ଟି । ଏଥିରେ [illegible]କୌଣସି ଐତିହାସିକ ସତ୍ୟ ନାହିଁ । ଇଉରୋପୀୟ ପର୍ଯ୍ୟଟକ ମାନୁଚୀ ଓ ବର୍ଣ୍ଣିୟେ ଉଭୟେ ସାହାଜାହାନ୍‌ଙ୍କର ବିଦୁଷୀ କନ୍ୟା, ଜେବ୍-ଉନ୍ନିସାଙ୍କର ପିତୃଷ୍ୱସା ଜାହାନାରାଙ୍କ ସମ୍ବନ୍ଧରେ ଠିକ୍ ଏହିପରି ଗୋଟିଏ ଅବୈଧ ପ୍ରେମର କାହାଣୀ ଉଲ୍ଲେଖ କରିଅଛନ୍ତି ଏବଂ ପରବର୍ତ୍ତୀ ଉର୍ଦ୍ଦୁ ଲେଖକମାନେ ଏହି କଳଙ୍କକାହାଣୀ ଜେବ୍-ଉନ୍ନିସାଙ୍କ ଉପରେ ଆରୋପ କରି ଐତିହାସିକ ସତ୍ୟର ଗଭୀର ଅପଳାପ କରିଅଛନ୍ତି । ଅକିଲଖାଁ ଐତିହାସିକ ବ୍ୟକ୍ତି । ସେ ଆଜୀବନ ଆରଙ୍ଗଜେବ୍‌ଙ୍କର ବିଶ୍ୱସ୍ତ କର୍ମଗୃସ୍ତ ଥିଲେ । ସେ ଅକ୍ଟୋବର ୧୬୮୦ରେ ଦିଲ୍ଲୀର ସୁବାଦାର ରୂପେ ନିଯୁକ୍ତ ହୋଇ ସେହି କର୍ମରେ ୧୬୯୭ରେ ପ୍ରାଣତ୍ୟାଗ କଲେ * । ସୁତରାଂ ଡେକ୍‌ଚିରେ ସିଦ୍ଧହୋଇ

---

* Sarkar—"Studies in Aurengzeb's reign." p. 135—137.

ମଭଥିବା କଥା ସମ୍ପୂର୍ଣ୍ଣ ମିଥ୍ୟା । ଯୁବରାଜ ଅକବରଙ୍କ ସହିତ ଷଡ଼ଯନ୍ତ୍ରରେ ଲିପ୍ତ ହୋଇଥିବାଯୋଗୁଁ ବାଦଶାହ ଜେବ୍‌ଉନ୍ନିସାଙ୍କୁ ବନ୍ଦୀ କରିଥିଲେ, ଏ କଥା ଇତିହାସପ୍ରସିଦ୍ଧ । ସୁତରାଂ ତାଙ୍କ ସମ୍ବନ୍ଧରେ ପ୍ରଚଳିତ ଏହି କଳଙ୍କପୂର୍ଣ୍ଣ ପ୍ରେମକାହାଣୀର କୌଣସି ଐତିହାସିକ ଭିତ୍ତି ନାହିଁ ।

ଜେବ୍ ଉନ୍ନିସାଙ୍କର ଚରିତ୍ର ସମ୍ବନ୍ଧରେ ଆଉ ଗୋଟିଏ ଭିତ୍ତିହୀନ, କପୋଳକଳ୍ପିତ ଜନରବ ଶୁଣାଯାଏ । ହିନ୍ଦୁକୁଳତିଳକ ଛତ୍ରପତି ଶିବାଜୀଙ୍କୁ ନେଇ ଏହି ଅମୂଳକ ଜନପ୍ରବାଦର ସୃଷ୍ଟି । କାହାରି କାହାରି ମତରେ ୧୬୬୬ ଖ୍ରୀଷ୍ଟାବ୍ଦର ମେ ମାସ ୧୨ ତାରିଖରେ ଯେତେବେଳେ ଦିଲ୍ଲୀର ବାଦସାହଙ୍କ ସହିତ ଶିବାଜୀଙ୍କର ସାକ୍ଷାତ ହୁଏ, ସେହି ସମୟରେ ଜେବ୍-ଉନ୍ନିସା ପ୍ରଥମ ଦର୍ଶନରେ ତାଙ୍କ ପ୍ରତି ଆସକ୍ତ ଓ ଆକୃଷ୍ଟ ହୋଇ ପଡ଼ିଥିଲେ । ପ୍ରଣୟୀ ଯୁଗଳ ପ୍ରେମର ନିଦର୍ଶନ ସ୍ୱରୂପ ପରସ୍ପର ଅଙ୍ଗୁରୀୟ ବିନିମୟ କରି ବିଦାୟ ଗ୍ରହଣ କରିଥିଲେ । ଏହି ଗଳ୍ପଟି ଯେପରି ଅସ୍ୱାଭାବିକ ସେହିପରି ସମ୍ପୂର୍ଣ୍ଣ ଅନୈତିହାସିକ । କାରଣ, ସମସାମୟିକ କୌଣସି ଫାର୍ସି କିମ୍ବା ମହାରାଷ୍ଟ୍ର ଭାଷାରେ ଲିଖିତ ଶିବାଜୀଙ୍କର ଜୀବନଚରିତରେ ଏ ବିଷୟର ଉଲ୍ଲେଖ ନାହିଁ * ।

---

* The whole story is not only unhistoric, but improbable. Sarkar—"Studies in Aurengzeb's reign." p. 140.

## ଆଧୁନିକ ଭାରତ

ଇଂରେଜମାନଙ୍କର ଆଗମନ ଫଳରେ ଭାରତରେ ଯେ ଏକ ନବଯୁଗର ଆବିର୍ଭାବ ହୋଇଅଛି, ଏଥିରେ କାହାର ମତଦ୍ୱୈଧ ନାହିଁ । ନୂତନ ବେଷ୍ଟନୀ ଓ ବାୟୁମଣ୍ଡଳର ପ୍ରଭାବରେ ଆମ୍ଭମାନଙ୍କର ଚିନ୍ତା ଓ କର୍ମପ୍ରଣାଳୀରେ ଅଦ୍ଭୁତ ପରିବର୍ତ୍ତନ ଘଟିଅଛି । ସମଗ୍ର ଭାରତବର୍ଷ ନବଶକ୍ତିରେ ଶକ୍ତିମାନ୍ ଓ ନୂତନ ତେଜରେ ତେଜୀୟାନ୍ ହୋଇ ଉଠିଅଛି । ହିମାଚଳଠାରୁ କୁମାରିକା ପର୍ଯ୍ୟନ୍ତ ଗୋଟିଏ ନୂତନ ଭାବର ତରଙ୍ଗ ଏ ଦେଶରେ ଖେଳିଯାଇ ସମଗ୍ର ଜାତିକୁ ନୂତନ ଆଦର୍ଶ ଓ ନୂତନ ଚିନ୍ତାରେ ଉଦ୍‌ବୁଦ୍ଧ ଓ ଅନୁପ୍ରାଣିତ କରିଅଛି । ସ୍ୱାଧୀନ ଚିନ୍ତା ଓ ସ୍ୱାବଲମ୍ବନ ପ୍ରବୃତ୍ତି ଫଳରେ ଆଜି ଭାରତବାସୀ ନାନାପ୍ରକାର ଅର୍ଥନୈତିକ, ସାମାଜିକ ଓ ରାଜନୈତିକ ସମସ୍ୟା ସମାଧାନ କରିବାକୁ ତତ୍ପର ହୋଇଅଛି । ସମାଜ ସୃଷ୍ଟି, ରାଷ୍ଟ୍ର ପ୍ରତିଷ୍ଠା, ଶିକ୍ଷାର ବ୍ୟବସ୍ଥା, ସାହିତ୍ୟଚର୍ଚ୍ଚା, ବିଜ୍ଞାନାନୁଶୀଳନ, ଧର୍ମକର୍ମ ଓ ପ୍ରତିଷ୍ଠାନ-ଗଠନ—ଏହି ସକଳ ବିଷୟରେ ଧାରାବାହିକ ଆନ୍ଦୋଳନର ସୂତ୍ରପାତ ହୋଇ ସମସ୍ତ ଦେଶକୁ ତରଙ୍ଗାୟିତ କରୁଅଛି । ଦେଶର ଦାରିଦ୍ର୍ୟ, ଦୁର୍ଭିକ୍ଷ, ମହାମାରୀ, ଅକାଳମୃତ୍ୟୁ, ଅତ୍ୟାଚାର, ଅବିଚାର, ଅସ୍ତ୍ର-ଶକ୍ତିରେ ଅବିଶ୍ୱାସ ଓ ଧର୍ମ ପ୍ରତି ଅନାସ୍ଥା ପ୍ରଭୃତି ସମାଜର ଅମଙ୍ଗଳ ଓ ଅନୈସର୍ଗିକ ବ୍ୟାଧି ପ୍ରତି ଅନେକଙ୍କର ଦୃଷ୍ଟି ଆକୃଷ୍ଟ ହୋଇଅଛି । ମୂଳତଃ ବିଂଶ ଶତାବ୍ଦୀରେ ଆମ୍ଭମାନଙ୍କ ଦେଶରେ ଯେଉଁ ଆନ୍ଦୋଳନ ଚାଲିଅଛି, ତାହା ପ୍ରଧାନତଃ ବୈଷୟିକ ଓ ରାଜନୈତିକ । ବିଂଶ ଶତାବ୍ଦୀର ଭାରତୀୟ ଜନନାୟକ ଓ କର୍ଣ୍ଣଧାରମାନେ ବହୁମୀତର ପ୍ରଚାରକ ଓ ରାଜନୈତିକ କର୍ମକ୍ଷେତ୍ରର କର୍ମୀ ।

ହିନ୍ଦୁ ଭାରତବର୍ଷରେ ଅତି ପ୍ରାଚୀନ କାଳରେ ସାମାଜିକ ଆନ୍ଦୋଳନ ଅତ୍ୟନ୍ତ ପ୍ରବଳ ଓ ଶକ୍ତିଶାଳୀ ହୋଇ ଉଠିଥିଲା । ସେତେବେଳେ ସ୍ୱାଧୀନ ହିନ୍ଦୁଜାତି ରାଜନୈତିକ ବିଷୟରେ ରାଜା ଏବଂ ତାଙ୍କର କର୍ମଚାରୀମାନଙ୍କ ଉପରେ ସମ୍ପୂର୍ଣ୍ଣ ଓ ଅଖଣ୍ଡ ଦାୟିତ୍ୱ ନ୍ୟସ୍ତ କରି ସମାଜର, ପରିବାରର ଓ ଗ୍ରାମ୍ୟ ଜୀବନର ଶୃଙ୍ଖଳାବିଧାନ ଓ ମଙ୍ଗଳ କାମନାରେ ସମସ୍ତ ଶକ୍ତି ନିୟୋଜିତ କରୁଥିଲେ । ସେଥିପାଇଁ ସେ ଯୁଗର ରାଷ୍ଟ୍ରୀୟ ଆନ୍ଦୋଳନ ବର୍ତ୍ତମାନ ଯୁଗ ପରି ସେତେ ବଳଶାଳୀ ନ ଥିଲା । ପୃଥିବୀର ଯେ କୌଣସି ସ୍ୱାଧୀନ ଓ ସ୍ୱାବଲମ୍ବନଶୀଳ ଜାତିପରି ହିନ୍ଦୁମାନେ ସେତେବେଳେ ଶିକ୍ଷା, ଦୀକ୍ଷା ଓ ସମାଜର ସଂସ୍କାର ନିମନ୍ତେ ଆନ୍ଦୋଳନ କରୁଥିଲେ । ଜାତିଭେଦ, ଗୁରୁଶିଷ୍ୟର ସମ୍ବନ୍ଧ, ଧର୍ମ, ଶିକ୍ଷା ଓ ଅଧିକାର ନିର୍ଣ୍ଣୟ ଇତ୍ୟାଦି ସାମାଜିକ ଓ ଧର୍ମ ଜୀବନର ଉନ୍ନତିକଳ୍ପେ ସମସ୍ତ କାର୍ଯ୍ୟ ଓ ଚିନ୍ତା ଶୃଙ୍ଖଳିତ ହେଉଥିଲା ।

ତତ୍ପରେ ମଧ୍ୟ ଯୁଗରେ ଯେଉଁ ସମସ୍ତ ଆନ୍ଦୋଳନର ସୂତ୍ରପାତ ହେଲା, ସେ ସମସ୍ତ ହିନ୍ଦୁ ଜାତିର ସ୍ୱାଧୀନତା ରକ୍ଷା କରିବା ନିମିତ୍ତ ଏବଂ ଏହି ହିନ୍ଦୁଧର୍ମପ୍ରଧାନ ଭାରତବର୍ଷକୁ ବିଧର୍ମୀ ମୁସଲମାନ-ମାନଙ୍କର ଗ୍ରାସରୁ ରକ୍ଷା କରିବା ନିମନ୍ତେ । ମୁସଲମାନ ସାମ୍ରାଜ୍ୟର ସମୂଳ ବିନାଶ ଓ ଧ୍ୱଂସ ସେ ସମୟର ଚିନ୍ତା, କର୍ମ ଓ ଆନ୍ଦୋଳନର ଏକମାତ୍ର ମୂଳମନ୍ତ୍ର ଥିଲା । ସେଥିପାଇଁ ଭାରତରେ କ୍ଷୁଦ୍ର ବୃହତ୍ ବହୁ ସଂଖ୍ୟକ ହିନ୍ଦୁରାଜ୍ୟ ସ୍ଥାପିତ ହୋଇଥିଲା । ରାଜପୁତ, ଶିଖ ଓ ମରହଟ୍ଟା ପ୍ରଭୃତି ଜାତିର ଆବିର୍ଭାବ ଓ ଅଭ୍ୟୁତ୍ଥାନ ହିନ୍ଦୁଧର୍ମର ସଂସ୍ଥାପନା ନିମିତ୍ତ । ସେ ସମୟର ରାଷ୍ଟ୍ରୀୟ କିମ୍ବା ରାଜନୈତିକ ଆନ୍ଦୋଳନ ଧର୍ମ ଉପରେ ପ୍ରତିଷ୍ଠିତ ହୋଇଥିଲା । ମୁସଲମାନମାନଙ୍କୁ ଏ ଦେଶରୁ ତଡ଼ି ବିଧର୍ମୀମାନଙ୍କର କବଳ ଗ୍ରାସରୁ ହିନ୍ଦୁ ଧର୍ମକୁ ମୁକ୍ତ କରିବା

ମଧ୍ୟଯୁଗର ଭାରତୀୟ ଦେଶସେବୀ ଓ ଦେଶ ପ୍ରେମିକମାନଙ୍କର କର୍ତ୍ତବ୍ୟ ଥିଲା । ପ୍ରତାପସିଂହ, ଗୁରୁଗୋବିନ୍ଦ, ନାନକ, ଶିବାଜୀ, କବୀର, ଚୈତନ୍ୟ ଓ ରାମାନନ୍ଦ ପ୍ରଭୃତି ମଧ୍ୟଯୁଗର ବୀର ଓ ସମାଜ ସଂସ୍କାରକମାନେ କେବଳ ଦେଶର ରାଜନୈତିକ ସ୍ୱାଧୀନତା ଓ ମୁକ୍ତି ନିମନ୍ତେ ନୁହେଁ, ତାହା ସାଙ୍ଗେ ସାଙ୍ଗେ ସମାଜ ସଂସ୍କାର, ପାରିବାରିକ ଜୀବନ ଏବଂ ଅନ୍ୟାନ୍ୟ ସକଳ ପ୍ରକାର ଉନ୍ନତି ସକାଶେ ବିଦେଶୀୟ ରାଜାମାନଙ୍କ ବିରୁଦ୍ଧରେ ଖଡ୍ଗ ଉତ୍ତୋଳନ କରିଥିଲେ ଓ ସମାଜରେ ମୁସଲମାନମାନଙ୍କର ପ୍ରାଧାନ୍ୟରେ ଯେଉଁ କୁସଂସ୍କାର ଓ ବିପ୍ଳବ ଘଟିଥିଲା, ତାହାର ଧ୍ୱଂସ ଓ ବିନାଶ ନିମନ୍ତେ ପ୍ରବଳ ଆନ୍ଦୋଳନ ଓ କର୍ମ୍ମ କରିଥିଲେ ।

ଇଂରେଜମାନଙ୍କର ଆଗମନ ପରେ ଇଉରୋପୀୟ ସଭ୍ୟତାର ସଂଘର୍ଷରେ ଆସି ଏ ଦେଶରେ ଦେଶ-ସେବକ, ଜନ-ନାୟକ ଓ ଦେଶ-ପ୍ରାଣ ନେତାମାନଙ୍କର ଚିନ୍ତାର ସ୍ରୋତ ଭିନ୍ନ ଦିଗରେ ପ୍ରବାହିତ ହେବାକୁ ଲାଗିଲା । ବର୍ତ୍ତମାନ ନବ୍ୟ ଭାରତ ଗଠନର ନେତାମାନଙ୍କର ଦେଶ ସେବାର ମୂଳନୀତି ହେଲା ପ୍ରଜା-ଶକ୍ତିର ଉତ୍ତୋଳନ, ଦେଶରେ ବିଜ୍ଞାନ ଚର୍ଚ୍ଚାର ବିସ୍ତୃତି, ଶାସନ-ପ୍ରଣାଳୀର ସଂସ୍କାର ଓ ପରିବର୍ତ୍ତନ, ଜଡ଼ଜଗତ ଉପରେ ଆଧିପତ୍ୟ ସ୍ଥାପନ ଏବଂ ଜାତିଧର୍ମ୍ମ ନିର୍ବିଶେଷରେ ପ୍ରତ୍ୟେକ ପ୍ରଜାର ଅଧିକାର-ପ୍ରତିଷ୍ଠା, ଏବଂ ଅସ୍ପୃଶ୍ୟତାର ବିନାଶ ଓ ଧ୍ୱଂସ । ସ୍ଥୂଳତଃ ଭାରତରେ ଇଉରୋପୀୟ ସଭ୍ୟତାର ଜୀବନ୍ତ ଓ ନୀତିକ ବିକାଶ ହେଲା ଆଧୁନିକ ଦେଶପ୍ରେମୀ-ମାନଙ୍କର ଲକ୍ଷ୍ୟ ଓ ଚରମ ନୀତି । ଏ ନବଯୁଗରେ ମଧ୍ୟ ଭାରତର ରାଜନୈତିକ ଆନ୍ଦୋଳନ ଧର୍ମ-ଆନ୍ଦୋଳନ ଠାରୁ ପୃଥକ୍ ହୋଇ ନାହିଁ । ଅବହମାନ କାଳରୁ ଭାରତରେ ରାଜନୀତି ଧର୍ମ ସହିତ ସାଙ୍ଗିଭାବେ ଜଡ଼ିତ ହୋଇ ଆସିଅଛି ।

ବର୍ତ୍ତମାନ ଦେଖାଯାଉ ଇଂରେଜମାନଙ୍କର ଆଗମନ ଫଳରେ ଏ ଦେଶରେ କି କି କଲ୍ୟାଣ ସାଧିତ ହୋଇଅଛି । ଇଉରୋପର ଅଧିବାସୀ ଜାତି ଖ୍ରୀଷ୍ଟ ପଞ୍ଚଦଶ ଓ ଷୋଡ଼ଶ ଶତାବ୍ଦୀରେ ଏ ଦେଶକୁ ବାଣିଜ୍ୟ କରିବାକୁ ଆସିଲେ । ପର୍ତ୍ତୁଗିଜ୍ ନାବିକ ଭାସ୍କୋଡ଼ଗାମାଙ୍କ ଆବିଷ୍କୃତ ଜଳ-ପଥ ଭାରତ-ଇତିହାସରେ ଏକ ନୂତନ ଅଧ୍ୟାୟ ଉଦ୍‌ଘାଟନ କଲା । ମୋଗଲ-ରାଜତ୍ୱ ସମୟରେ ଭାରତରେ ପର୍ତ୍ତୁଗିଜ୍-ମାନଙ୍କର ଅତ୍ୟାଚାର, ଅନାଚାର ଓ ଧର୍ମାନ୍ଧତା ଏତେ ପ୍ରବଳ ହୋଇ ଉଠିଲା ଯେ ସମ୍ରାଟ୍ ସାହାଜାହାନ ସେମାନଙ୍କ ବିରୁଦ୍ଧରେ ଅସ୍ତ୍ର ପ୍ରୟୋଗ କରିବାକୁ ବାଧ୍ୟ ହୋଇଥିଲେ * । ଭାରତରେ ପର୍ତ୍ତୁଗିଜ୍ ସାମ୍ରାଜ୍ୟ ସେତେ ଶକ୍ତିଶାଳୀ ନ ଥିବାରୁ ଏ ଦେଶର ସମାଜ, ସଭ୍ୟତା ଓ ସଂସ୍କୃତି ଉପରେ ସେମାନେ କୌଣସି ସ୍ଥାୟୀ ପ୍ରଭାବ ବିସ୍ତାର କରି ପାରି ନ ଥିଲେ । ଭାରତକୁ ଆଧୁନିକତାର ଶୁଭ୍ର ଆଲୋକରେ ଆଲୋକିତ କଲେ ପ୍ରବଳ ପରାକ୍ରମଶାଳୀ, ଅଦ୍ଭୁତବୁଦ୍ଧିସମ୍ପନ୍ନ ଇଂରେଜ ଜାତି । ଭାରତର ଅରକ୍ଷିତ ସମୁଦ୍ରୋପକୂଳକୁ ପ୍ରଥମେ ଆଘାତ କଲେ ଇଉରୋପୀୟମାନେ । ଇଉରୋପୀୟମାନଙ୍କର ଅସା-ଧାରଣ କୌଶଳ ଓ ରଣତତ୍ତ୍ୱ ହେଲା ଏ ଦେଶର ପରାଧୀନତାର କାରଣ । ଆର୍ଯ୍ୟମାନେ ଏ ଦେଶକୁ ଆସି ଚିରକାଳ ନିମନ୍ତେ ଏ ଦେଶରେ ବସତି ସ୍ଥାପନ କଲେ । ସ୍ୱର୍ଣ୍ଣପ୍ରସୂ ଭାରତ-ଭୂମିକୁ ନିଜର ଆଦରମୟୀ ଜନ୍ମଭୂମି କରିନେଲେ । ଏ ଦେଶର ବନ, ପର୍ବତ, ନଦ ଓ ନଦୀକୁ ନିଜର କରି ନେଲେ । କିନ୍ତୁ ଇଂରେଜମାନଙ୍କର

---

* But the Portuguese as rulers created a strong feeling of repulsion in the Indian mind, by their cruelty, their religious bigotry.—J. N, Sarkar, India through the Ages, p 91.

ବିଶେଷତଃ ଯେ ସେମାନେ ଏପର୍ଯ୍ୟନ୍ତ ଭାରତକୁ ନିଜର ଘର କରି ନାହାନ୍ତି କି କରିବାର ସମ୍ଭାବନା ଭବିଷ୍ୟତରେ ନାହିଁ । ଇଂଲଣ୍ଡ ସେମାନଙ୍କର ଜନ୍ମଭୂମି ଚିରକାଳ ସେପରି ଥିବ । ସେମାନଙ୍କର ରାଜନୈତିକ ଶକ୍ତି ଓ ପ୍ରାଧାନ୍ୟର କେନ୍ଦ୍ରଭୂମି ହୋଇ ଇଂଲଣ୍ଡ ଚିରକାଳ ବିରାଜୁଥିବ । ଭାରତର ଉତ୍ଥାନ-ପତନ ଏ ଦେଶର ସାମାଜିକ, ରାଜନୈତିକ ଓ ଅର୍ଥନୈତିକ ଅବସ୍ଥା ଉପରେ ନିର୍ଭର ନ କରି ଇଂରେଜମାନଙ୍କର ରାଜନୈତିକ ଓ ଅର୍ଥନୈତିକ ଉନ୍ନତି-ଅବନତି ଉପରେ ନିର୍ଭର କରୁଥିବ । ଇଂରେଜ-ଜାତିର ଉତ୍ଥାନ-ପତନ ମଧ୍ୟ ଭାରତ ଉପରେ ନିର୍ଭର ନ କରି ସେମାନଙ୍କର ମାତୃଭୂମିର ସାମାଜିକ ଓ ରାଜନୈତିକ ପରିସ୍ଥିତି ଉପରେ ନିର୍ଭର କରୁଥିବ । ସୁତରାଂ କହିବାକୁ ଗଲେ ଭାରତ, ଆର୍ଯ୍ୟ, ଶକ, ପଠାଣ ଓ ମୋଗଲମାନଙ୍କ ପରି କଦାପି ଇଂରେଜମାନଙ୍କର ଚିରସ୍ଥାୟୀ ବାସସ୍ଥଳୀ ହୋଇ ନାହିଁ କି ହେବ ନାହିଁ ।

ଭାରତ ପ୍ରତି ଇଂରେଜମାନଙ୍କର ପ୍ରଥମ ଦାନ ହେଉଛି ଦେଶ-ବ୍ୟାପୀ ଶାନ୍ତି, ବୈଦେଶିକ ଆକ୍ରମଣରୁ ଏ ଦେଶର ମୁକ୍ତି ଓ ଅନ୍ତର୍ବିବାଦର ଧ୍ୱଂସ-ସାଧନ । ନାଦିରସାହଙ୍କ ଆକ୍ରମଣ ପରେ ପଶ୍ଚିମ ଓ ଦକ୍ଷିଣ ଭାରତରେ ଯେପରି ବିଶୃଙ୍ଖଳା, ଅତ୍ୟାଚାର, ଅନାଚାର, ଅନ୍ତର୍ବିପ୍ଳବ ଓ ଅରାଜକତା ରାଜତ୍ୱ କରୁଥିଲା, ତାହାର ଧ୍ୱଂସ ସାଧନ କରି ଏ ଦେଶରେ ଶାନ୍ତିର ମୂଳ-ମନ୍ତ୍ର ପ୍ରଚାର କଲେ ଇଂରେଜ ଜାତି । କ୍ଷୁଦ୍ର ବୃହତ ମୁସଲମାନ, ରାଜପୁତ, ଶିଖ ଓ ମରହଟ୍ଟା ରାଜ୍ୟକୁ ଧ୍ୱଂସ କରି, ସମଗ୍ର ଭାରତରେ ପ୍ରାଧାନ୍ୟ ବିସ୍ତାର କରି, ଇଂରେଜମାନେ ଯେ ଅକ୍ଳାନ୍ତ ପରିଶ୍ରମପୂର୍ବକ ଅସାଧାରଣ ବୁଦ୍ଧି ବିଚକ୍ଷଣତା ବଳରେ ଏ ଦେଶରେ ଶାନ୍ତି ଓ ସୁଶାସନ ସ୍ଥାପନ କରି ଅଛନ୍ତି ଏହା ଇତିହାସ କଦାପି ଅସ୍ୱୀକାର କରି ନ ପାରେ । ଏପରି

ଏକ ସୁବିଶାଳ ଓ ସୁଦୃଢ଼ ପ୍ରକାଣ୍ଡ ସାମ୍ରାଜ୍ୟ ସ୍ଥାପନ କରି ଓ ଦେଶରେ ଶାନ୍ତି ସ୍ଥାପନ କରିବାକୁ ଯାଇ କୋଟି କୋଟି ଭାରତ-ବାସୀଙ୍କୁ ଏକ ଶାସନ ସୂତ୍ରରେ ଗ୍ରଥିତ କରି ଇଂରେଜ ଜାତି ପୃଥିବୀର ଇତିହାସରେ ଯେପରି ଅମର ହୋଇଅଛନ୍ତି, ଭାରତର ଇତିହାସରେ ଆଉ କୌଣସି ବୈଦେଶିକ ଶାସକ ସେପରି କୃତ-କାର୍ଯ୍ୟ ହୋଇ ନାହିଁ ।

ଇଂରେଜମାନଙ୍କ ଆଗମନ ଫଳରେ ଭାରତର ସହିତ ବାହ୍ୟ ଜଗତର ସମ୍ବନ୍ଧ ଦୃଢ଼ୀଭୂତ ହୋଇଅଛି । ହିନ୍ଦୁ ଓ ମୋଗଲ ସମ୍ରାଟ-ମାନେ ସ୍ଥଳ-ପଥ ଓ ଜଳ-ପଥରେ ପାରସ୍ୟ, ଆରବ, ଝାଂଜିବାର, ଆବସିନିଆ, ଚୀନ, ସିଂହଳ, ମାଳୟ, ଜାଭା ଓ ସୁମାତ୍ରା ପ୍ରଭୃତି ଦେଶମାନଙ୍କ ସହିତ ବାଣିଜ୍ୟ-ବ୍ୟବସାୟ କରି ସୁଦୃଢ଼ ସମ୍ବନ୍ଧ ସ୍ଥାପନ କରିଥିଲେ । ପ୍ରାଚୀନ ଭାରତର ନୌବାଣିଜ୍ୟ ଆଜି କବିର କଳ୍ପନା ନୁହେଁ, ଦେଶପ୍ରେମିକର ଉଦ୍ଦାମ ଅସାର ଆସ୍ଫାଳନ ନୁହେଁ, ଜନସମାଜର ଭିତ୍ତିହୀନ କିମ୍ବଦନ୍ତୀ ନୁହେଁ । ଏହା ଇତିହାସର କଠୋର ସତ୍ୟ । ଏହି ନୌବାଣିଜ୍ୟ ଦ୍ୱାରା ପ୍ରାଚୀନ ଭାରତ ଅନେକ ବୈଦେଶିକ ରାଜ୍ୟ ସହିତ ଘନିଷ୍ଠ ସମ୍ପର୍କ ସ୍ଥାପନ କରିଥିଲା । କିନ୍ତୁ ମୋଗଲ ସାମ୍ରାଜ୍ୟର ପତନ ପରେ ଏହି ବୈଦେଶିକ ସମ୍ବନ୍ଧର ସୂତ୍ର ଛିନ୍ନ ହେଲା । ଭାରତରେ କୌଣସି ସୁପ୍ରତିଷ୍ଠିତ ରାଜଶକ୍ତି ନ ଥିବାରୁ, କିମ୍ବା ଦେଶରେ ସର୍ବଦା ଅନ୍ତର୍ବିପ୍ଳବର ଦାବାନଳ ଧୂ ଧୂ ହୋଇ ଜଳୁଥିବାରୁ ପାରସ୍ୟ, ଆରବ ଓ ବୋଖାରା ପ୍ରଭୃତି ରାଜ୍ୟ ସହିତ ଭାରତର କୌଣସି ପ୍ରକାର ବାଣିଜ୍ୟ-ସମ୍ପର୍କ ରହିଲା ନାହିଁ । କିନ୍ତୁ ଇଂରେଜମାନେ ପୁନର୍ବାର ଆମ୍ଭମାନଙ୍କର ସେହି ଇତିହାସ-ପ୍ରସିଦ୍ଧ ବୈଦେଶିକ ସମ୍ବନ୍ଧକୁ ପୁନର୍ଜୀବିତ ଓ ଦୃଢ଼ୀଭୂତ କଲେ । କେବଳ ଯେ ଅସିଆ ମହାଦେଶର ଅନ୍ୟାନ୍ୟ ଦେଶମାନଙ୍କ ସହିତ

ଭାରତୀୟମାନଙ୍କର ବାଣିଜ୍ୟ-ବ୍ୟବସାୟ ଓ ଭାବର ଆଦାନ ପ୍ରଦାନ ହେଉଅଛି, ତାହା ନୁହେ, ପୃଥିବୀର ଦୂରବର୍ତ୍ତୀ ଅନ୍ୟାନ୍ୟ ଦେଶ-ମାନଙ୍କ ସହିତ ଆମ୍ଭମାନଙ୍କର ସମ୍ବନ୍ଧ ଦିନକୁ ଦିନ ଦୃଢ଼ତର ଓ ଅଧିକ ଶକ୍ତିଶାଳୀ ହେଉଅଛି । ପୃଥିବୀର ଅନ୍ୟାନ୍ୟ ଦେଶମାନଙ୍କରେ ଯେଉଁ ରାଜନୈତିକ ଓ ଅର୍ଥନୈତିକ ଆନ୍ଦୋଳନର ସୂତ୍ରପାତ ହୋଇଅଛି, ଭାରତ ସେଥିରେ ତାର କ୍ଷୀଣ ଉଦ୍ୟମ ମିଶାଇ ଦେଇଅଛି । ପୃଥିବୀରେ ସଭ୍ୟତା, ସଂସ୍କୃତି, ବାଣିଜ୍ୟ ଓ ବ୍ୟବସାୟର ଉତ୍କର୍ଷ ଓ ଉନ୍ନତି ସାଧନ ନିମନ୍ତେ ଯେତେବେଳେ ଯେଉଁଠାରେ ନୂତନ ଭାବ ଓ ଚିନ୍ତାର ଆବିର୍ଭାବ ଓ ଉଦ୍ରେକ ହୋଇଅଛି, ଭାରତ ସେଥିରେ ତରଙ୍ଗାୟିତ ହୋଇଅଛି ଏବଂ ପ୍ରାଣରେ ନୂତନ ସ୍ପନ୍ଦନ ଅନୁଭବ କରିଅଛି । ମୂଳତଃ ସମସ୍ତ ଦେଶମାନଙ୍କୁ ଯଦି ପୃଥିବୀର ଗୋଟିଏ ଅଙ୍ଗବିଶେଷ ବୋଲି ଧରାଯାଏ ଭାରତ ସେହି ଅଙ୍ଗମାନଙ୍କ ମଧ୍ୟରେ ଗୋଟିଏ ପ୍ରଧାନ ଅଙ୍ଗ ବୋଲି ଧରି ନେବାକୁ ହେବ । ପୃଥିବୀର ସଭ୍ୟତାରେ ଭାରତ ଆଜି ନିଜକୁ ଅଙ୍ଗୀଭୂତ କରିଅଛି । ପୃଥିବୀର ସୁଖ, ଦୁଃଖ, ସମ୍ପଦ, ବିପଦରେ ଭାରତ ସମବେଦନା ପ୍ରକାଶ କରୁଅଛି । ଏହାଛଡ଼ା ଭାରତର ଆଜି ଉପାୟାନ୍ତର ନାହିଁ । ଏହା ଭାରତରେ ଇଂରେଜ-ଶାସନର ଅନିବାର୍ଯ୍ୟ ଓ ଅବଶ୍ୟମ୍ଭାବୀ ଫଳ । ହିନ୍ଦୁ, ପଠାଣ ଓ ମୋଗଲମାନଙ୍କର ରାଜତ୍ୱ କାଳରେ ଭାରତୀୟମାନେ ଏପରି ପରିସ୍ଥିତି କଳ୍ପନା ସୁଦ୍ଧା କରିପାରି ନ ଥିଲେ । ବର୍ତ୍ତମାନ ଅନ୍ଧକାରାଚ୍ଛନ୍ନ ଯେ କୌଣସି ସୁଦୂରବର୍ତ୍ତୀ ନିଭୃତପଲ୍ଲୀ ମଧ୍ୟ ପୃଥିବୀର ଅନ୍ୟାନ୍ୟ ଦେଶରୁ ବିଚ୍ଛିନ୍ନ ହୋଇ ଏକାକୀ ରହି ନ ପାରେ । ଅର୍ଥନୀତିର ଏକ ମୂଳମନ୍ତ୍ର ଆଜି ସମଗ୍ର ଜଗତର ବୈଷୟିକ ଜୀବନକୁ ନିୟନ୍ତ୍ରିତ ଓ ଶୃଙ୍ଖଳିତ କରୁଅଛି । ପାରିସ୍ ଲମ୍ବା ଷ୍ଟେ-ଷ୍ଣୋରେ କୌଣସି ଅଦ୍ଭୁତ ଔଷଧର ଆବିଷ୍କାର ହେଲେ ତାହା

ଅତି ଅଳ୍ପ ସମୟ ମଧ୍ୟରେ ଭାରତର ଯେ କୌଣସି ସୁଦୂର ପଲ୍ଲୀରେ ମିଳି ପାରୁଅଛି । ପୋଲଣ୍ଡ କିମ୍ବା କାନାଡ଼ାରେ ଶସ୍ୟହାନି କିମ୍ବା ଦୁର୍ଭିକ୍ଷ ହେଲେ ପଞ୍ଜାବରେ ଲୋକେ ଅନାହାରରେ ମରନ୍ତି । ସୁଦୂର ଅମେରିକା ମହାଦେଶର କୌଣସି ସ୍ଥାନରେ ତୂଳା-ଗୋଦାମରେ ନିଆଁ ଲାଗିଗଲେ ଆସାମର ଲୋକମାନେ ଶୀତରେ ଅସହ୍ୟ ଯନ୍ତ୍ରଣା ଭୋଗ କରନ୍ତି । ଇଂଲଣ୍ଡ କୌଣସି ଦେଶ ସହିତ ବହୁକାଳ ଧରି ଯୁଦ୍ଧରେ ବ୍ୟାପୃତ ରହିଲେ, ଭାରତର ଲୋକେ ଲୁଗା କିଣିବାକୁ ପଇସା ପାନ୍ତି ନାହିଁ । ଟେଲିଗ୍ରାଫ୍, ଜାହାଜ, ରେଲ୍ ଓ ସମ୍ବାଦପତ୍ର ପୃଥିବୀର ଅନ୍ୟାନ୍ୟ ଦେଶ ସହିତ ଭାରତର ଅର୍ଥନୈତିକ ସମ୍ବନ୍ଧକୁ ଦିନକୁ ଦିନ ଦୃଢ଼ୀଭୂତ କରୁଅଛି ।

ଇଂରେଜମାନଙ୍କର ଶାସନ ଫଳରେ କେବଳ ଯେ ଭାରତରେ ଶାନ୍ତି ଓ ଏକତା ସ୍ଥାପିତ ହୋଇଅଛି ତାହା ନୁହେ । କେବଳ ରାଜନୈତିକ ଓ ବାଣିଜ୍ୟ ଐକ୍ୟ ସମ୍ପାଦନ କରି ଇଂରେଜମାନେ ସନ୍ତୁଷ୍ଟ ହୋଇ ନାହାନ୍ତି । ଇଂରେଜଶାସନ ଫଳରେ ବିଭିନ୍ନ ଜାତି ଓ ଧର୍ମାବଲମ୍ବୀ ଲୋକମାନଙ୍କ ମଧ୍ୟରେ ଯେଉଁ ବାଦ-ବିସମ୍ବାଦ, ଅନୈକ୍ୟ ଓ ପାର୍ଥକ୍ୟ ଥିଲା ତାହା ତିରୋହିତ ହୋଇଅଛି । ଭାରତର ସମସ୍ତ ପ୍ରଦେଶ ଓ ଜାତି ଆଜି ଯେପରି ଗୋଟିଏ ଏକାନ୍ନବର୍ତ୍ତୀ ପରିବାରର ବିଭିନ୍ନ ସଭ୍ୟ । ଓଡ଼ିଶାରେ ବନ୍ୟା କିମ୍ବା ଦୁର୍ଭିକ୍ଷ ହେଲେ କରାଚୀର ଲୋକେ ସମବେଦନା ପ୍ରକାଶ କରନ୍ତି । ବମ୍ବେଇରେ ପ୍ଲେଗର ଆବିର୍ଭାବ ହେଲେ ବଙ୍ଗପ୍ରଦେଶର ଲୋକେ ତାହାର ପ୍ରତିକାରର ଉପାୟ ଚିନ୍ତା କରନ୍ତି । କ୍ୱେଟାରେ ଭୂମିକମ୍ପ ହେଲେ ପୁରୀର ମଠ ମହନ୍ତମାନେ ବିପନ୍ନ ଲୋକମାନଙ୍କୁ ଅର୍ଥସାହାଯ୍ୟ ଦିଅନ୍ତି । ଆଜି ଭାରତରେ ଯେଉଁ ସାମ୍ୟ ଓ ଭ୍ରାତୃଭାବ ଫୁଟି ଉଠିଅଛି, ଯାହା କି ଏବେ ସୁଦ୍ଧା ପୂର୍ଣ୍ଣତା ପାଇ ନାହିଁ, ତାହା ମଧ୍ୟ ଇଂରେଜ-ଶାସନର ଫଳ । ସର୍ବ

ମାତ୍ର ପ୍ରାଦେଶିକତାରୁ ଆମ୍ଭମାନଙ୍କର ଜନ-ନାୟକମାନେ ଏପର୍ଯ୍ୟନ୍ତ ମୁକ୍ତ ହୋଇ ନାହାନ୍ତି । ତଥାପି ଆଜି ଭାରତ ଯେ ନୂତନ ଜାତୀୟ ଅନୁପ୍ରେରଣାରେ ଉଦ୍‌ବୁଦ୍ଧ ହୋଇଅଛି, ଏଥିରେ କାହାର ସନ୍ଦେହ ନାହିଁ । ହିନ୍ଦୁ ଓ ମୋଗଲ ରାଜତ୍ୱ କାଳରେ ଭାରତରେ ଏପରି ସାମ୍ୟ ସାର୍ବଜନୀନ ପ୍ରୀତି ଓ ସମବେଦନା ଆଦୌ ନ ଥିଲା କହିଲେ ଚଳେ । ମୌର୍ଯ୍ୟ-ସମ୍ରାଟ ଅଶୋକ ଓ ମୋଗଲ ସମ୍ରାଟ ଅକବର ଏ ଦିଗରେ ଚେଷ୍ଟା କରି ବହୁ ପରିମାଣରେ କୃତକାର୍ଯ୍ୟ ହୋଇଥିଲେ କିନ୍ତୁ ମୌର୍ଯ୍ୟ-ସାମ୍ରାଜ୍ୟ ଓ ମୋଗଲ-ସାମ୍ରାଜ୍ୟର ଅବସାନ ପରେ ସାମ୍ୟଭାବର ଅସ୍ତିତ୍ୱ ମଧ୍ୟ ଲୋପ ପାଇଲା । ପୁନର୍ବାର ଅନ୍ତର୍ବିପ୍ଳବର ଝଞ୍ଜାବାତ ବହି ଏ ଦେଶକୁ ଘୋର ଛାରଖାର କରି ଦେଲା ।

ପାଶ୍ଚାତ୍ୟ ସଭ୍ୟତା, ସଂସ୍କୃତି ଓ ଶାସନଫଳରେ ଭାରତର ଲୋକମାନଙ୍କ ହୃଦୟରେ ଏକ କର୍ମଠତା ଓ ପ୍ରଗତିର ଭାବ ଜାଗ୍ରତ ହୋଇଅଛି । ଆମ୍ଭମାନଙ୍କ ଦେଶର ନେତା-ନାୟକମାନେ କେବଳ ପ୍ରାଚୀନ ଆର୍ଯ୍ୟ ବୈଦିକ ମହର୍ଷିମାନଙ୍କର ସ୍ତୁତିଗାନ କରି ସନ୍ତୁଷ୍ଟ ନୁହନ୍ତି—କେବଳ ପ୍ରାଚୀନ ଐତିହାସିକ ବୈଭବ ଓ ଗୌରବରେ ସ୍ଫୀତ ହୋଇ ଜାତୀୟ କଲ୍ୟାଣପ୍ରତି ଉଦାସୀନ ହୋଇ ରହି ନାହାନ୍ତି, ଭାରତର ଆଧୁନିକ ସାମାଜିକ, ଅର୍ଥନୈତିକ ଓ ରାଜନୈତିକ ପରିସ୍ଥିତିରେ ଘୋର ଅସନ୍ତୋଷ ପ୍ରକାଶ କରି କିପରି ପାଶ୍ଚାତ୍ୟ ଦେଶର ଅନୁକରଣରେ ଏ ଦେଶର ସମସ୍ତ ପ୍ରକାର ଅକଲ୍ୟାଣ, ଅମଙ୍ଗଳ, ଅବିଦ୍ୟା, ଅସତ୍ୟ, ଅନାଗ୍ରହ ଓ ଅତ୍ୟାଗ୍ରହ ଦୂର କରି ପାରନ୍ତି, ତାର ଉପାୟ ଆମ୍ଭମାନଙ୍କର ଜନନାୟକମାନେ କରନ୍ତି । ଶିକ୍ଷା, ଶିଳ୍ପ, ବାଣିଜ୍ୟ, ବ୍ୟବସାୟ ଓ ରାଜନୀତିରେ ଭାରତ କିପରି ପାଶ୍ଚାତ୍ୟ ଦେଶର ଅନ୍ୟାନ୍ୟ ପ୍ରଗତିଶୀଳ ଜାତିମାନଙ୍କ ସହିତ

ସମକକ୍ଷ ହୋଇ ଉଠି ପାରିବ—ଏ ବଳିଷ୍ଠ ଭାବ ଆଜି ଭାରତର ଚିନ୍ତା-ନାୟକମାନଙ୍କର ହୃଦୟକୁ ଆଲୋଡ଼ନ କରୁଅଛି । ଭାରତୀୟ-ମାନଙ୍କର ଦୃଷ୍ଟି ଆଜି ସେହି ପ୍ରାଚୀନ କପୋଳ-କଳ୍ପିତ 'ସତ୍ୟଯୁଗ' ଉପରେ କେବଳ ନିବଦ୍ଧ ନୁହେଁ । ଆଜି ଭାରତର ପୁରୋଦୃଷ୍ଟି ଭବିଷ୍ୟତକୁ ନେଇ ବ୍ୟାକୁଳ । ପ୍ରାଚୀନ ଅନୁଷ୍ଠାନ, ପ୍ରତିଷ୍ଠାନ, ଚିନ୍ତା, ଆଦର୍ଶ ଓ ସାଧନାକୁ ସମ୍ପୂର୍ଣ୍ଣ ଭାବରେ ବର୍ଜନ କରି ଭାରତ କିପରି ପାଶ୍ଚାତ୍ୟ ଦେଶମାନଙ୍କ ସହିତ ସମକକ୍ଷ ହୋଇ ପାରେ—ଏହି ବ୍ୟାକୁଳତା ଆଜି ବିଂଶ ଶତାବ୍ଦୀର ଦେଶପ୍ରେମିକମାନଙ୍କ ହୃଦୟକୁ ଆନ୍ଦୋଳିତ କରୁଅଛି ।

ଶିକ୍ଷା, ସାହିତ୍ୟ, ସଂସ୍କୃତି ଓ ଭାଷା ଦିଗରେ ମଧ୍ୟ ଇଂରେଜ-ମାନଙ୍କର ଶାସନ ଫଳରେ ଏକ ନବଯୁଗ ଓ ନୂତନ ଶକ୍ତିର ତରଙ୍ଗ ଭାରତର ପ୍ରତ୍ୟେକ ପ୍ରଦେଶରେ ଖେଳି ଯାଇଅଛି । ପ୍ରାଚୀନକାଳର ଶିକ୍ଷା-ପଦ୍ଧତିର ସମ୍ପୂର୍ଣ୍ଣ ପରିବର୍ତ୍ତନ ହୋଇଅଛି । ଗୁରୁଶିଷ୍ୟର ସେ ପବିତ୍ର ସମ୍ବନ୍ଧ ଇଂରେଜ ଶିକ୍ଷା ଫଳରେ କେତେଦୂର ଅକ୍ଷୁଣ୍ଣ ରଖା ଯାଇ ପାରିଅଛି, ତାହା ଶିକ୍ଷାନୁରାଗୀ ଲୋକମାନଙ୍କର ପ୍ରଣିଧାନର ବିଷୟ । ଇଂରେଜ ସାହିତ୍ୟ ଓ ରଚନା-ଭଙ୍ଗୀର ଆଦର୍ଶରେ ଭାରତର ପ୍ରାଦେଶିକ ସାହିତ୍ୟ ସବୁ ପ୍ରଭାବିତ ଓ ନିୟନ୍ତ୍ରିତ ହେଉଅଛି । ଆମ୍ଭମାନଙ୍କ ଦେଶର ଆଧୁନିକ ପ୍ରଧାନ କବି, ସାହିତ୍ୟିକ, ବୈଜ୍ଞାନିକ ଓ ଐତିହାସିକମାନେ ସମସ୍ତେ ପାଶ୍ଚାତ୍ୟ ଶିକ୍ଷାରେ ଶିକ୍ଷିତ ଓ ଦୀକ୍ଷିତ । ଇଂରେଜ ସାହିତ୍ୟର ପ୍ରଭାବ ଭାରତର ପ୍ରାଦେଶିକ ସାହିତ୍ୟର ଶୈଳୀକୁ ଆଘାତ କରୁଅଛି । ସେ କଠିନ ଆଘାତରେ ଆଜି ଆମ୍ଭମାନଙ୍କର ମୌଳିକତା ଲୁପ୍ତ ହେବାକୁ ବସିଲାଣି । ପ୍ରାଦେଶିକ ସାହିତ୍ୟମାନଙ୍କରେ ମଧ୍ୟଯୁଗ ପରି ଏବେ ଅଳଙ୍କାର-ପ୍ରଧାନ 'ବ'-ବହୁଳ ବୈଦେହୀଶବିଳାସ ଲେଖା ଯାଉ ନାହିଁ । ସେ

କାଳ ପରି ଏବେ କେବଳ କବିତା ଓ କାବ୍ୟରେ ଆମ୍ଭମାନଙ୍କର ସାହିତ୍ୟ-ଭୂମି ମ୍ଳାବିତ ହେଉ ନାହିଁ । ବିଜ୍ଞାନ ଇତିହାସ ଅର୍ଥନୀତି ଦର୍ଶନ ଓ ମନୋବିଜ୍ଞାନ ପ୍ରଭୃତି ନାନା ବିଷୟରେ ପାଶ୍ଚାତ୍ୟ ଲେଖକ-ମାନଙ୍କର ଆଦର୍ଶକୁ ଅନୁସରଣ କରି ଆମ୍ଭମାନଙ୍କ ପ୍ରଦେଶର ସାହିତ୍ୟିକମାନେ ମାତୃଭାଷାରେ ନାନାଶ୍ରେଣୀର ଉପାଦେୟ ପୁସ୍ତକ ଲେଖୁଅଛନ୍ତି । ଭାଷା ମଧ୍ୟ ପ୍ରାଚୀନ ଓ ମଧ୍ୟଯୁଗ ପରି ସେତେ କ୍ଲିଷ୍ଟ ଓ ଦୁର୍ବୋଧ୍ୟ ହେଉ ନାହିଁ । ଆଧୁନିକ ନାଟକ ପ୍ରହସନ ଓ ଉପନ୍ୟାସ ଯେ ଇଂରେଜ ସାହିତ୍ୟର ପ୍ରଭାବର ଫଳ ଏଥିରେ କାହାର ମତଦ୍ୱୈଧ ନାହିଁ । ଦେଶାତ୍ମବୋଧ ଓ ଦେଶପ୍ରୀତିସୂଚକ ସାହିତ୍ୟ ଏବେ ଯେ ଭାରତରେ ପ୍ରାଦେଶିକ ଭାଷାମାନଙ୍କରେ ଲେଖାଯାଇ ଦେଶର ସୁମହାନ୍ ଗୌରବମୟ ଅତୀତ ପ୍ରତି ଜନ-ସାଧାରଣଙ୍କର ଦୃଷ୍ଟି ଆକର୍ଷଣ କରି ଯାଉଅଛି, ଏହା ମଧ୍ୟ ଇଂରେଜ ସାହିତ୍ୟର ପ୍ରଭାବ ଓ ପ୍ରତିପତ୍ତି । ମୂଳତଃ ଜାତୀୟ ଜୀବନର ପ୍ରତ୍ୟେକ ବିଭାଗ, ପ୍ରତ୍ୟେକ ସ୍ତର ଓ ପ୍ରତି ଶିରା ପ୍ରଶିରାରେ ଇଂରେଜ ଶାସନ ଯେ ଏକ ଅଭିନବ ଶକ୍ତି, ନବଜାଗରଣ ଓ ନୂତନ ସ୍ପନ୍ଦନ ଆଣିଅଛି, ଏହା ଇତିହାସର କଠୋର ଜୀବନ୍ତ ସତ୍ୟ ।

ଇଉରୋପୀୟ ସଭ୍ୟତା ଆଜି ଆମ୍ଭମାନଙ୍କର ଅସ୍ଥିମଜ୍ଜାଗତ ହୋଇଅଛି । ଆମ୍ଭେମାନେ ଆଜି ସବୁ ବିଷୟରେ ଇଉରୋପକୁ ଅନୁକରଣ କରିବାକୁ ତତ୍ପର । ଏହି ଦେଢ଼ଶତ ବର୍ଷ ମଧ୍ୟରେ ଆମ୍ଭମାନଙ୍କ ଦେଶରେ ଧର୍ମ୍ମ, ସମାଜ, ଶିଳ୍ପ, ସାହିତ୍ୟ, ଏପରି କି ପାରିବାରିକ ଜୀବନରେ ଯେଉଁ ପରିବର୍ତ୍ତନ ଓ ବିପ୍ଳବ ଉପସ୍ଥାପିତ ହୋଇଅଛି, ସେ ସମସ୍ତ କି ଜାତୀୟ କଲ୍ୟାଣର ଉପଯୋଗୀ ଓ ଅନୁକୂଳ ? ଏହାକୁ ତନ୍ନ ତନ୍ନ କରି ବିଶ୍ଳେଷଣ କରି ଦେଖିବା ଏକାନ୍ତ ଆବଶ୍ୟକ । ଇଂରେଜମାନଙ୍କ ପ୍ରତି ଯାହା ଉପଯୋଗୀ

ଓ ଅନୁକୂଳ ତାହା ଭାରତୀୟମାନଙ୍କ ପ୍ରତି ସେପରି ହୋଇ ନ ପାରେ । ଭାରତର ବାୟୁମଣ୍ଡଳ, ବେଷ୍ଟନୀ, ଇତିହାସ-ପରମ୍ପରା, ସଙ୍ଗୀତ, ଆଚାର ଓ ବ୍ୟବହାର ଇଉରୋପଠାରୁ ସମ୍ପୂର୍ଣ୍ଣ ଭିନ୍ନ । ସୁତରାଂ ଇଉରୋପୀୟ ସଭ୍ୟତା ଏ ଦେଶ ପକ୍ଷ କେତେଦୂର ପ୍ରଯୁଜ୍ୟ ଓ ହିତକର ତାହା ଚିନ୍ତାଶୀଳ ପ୍ରବୀଣ ଦେଶପ୍ରାଣ ଜନନାୟକ-ମାନଙ୍କର ପ୍ରଣିଧାନର ବିଷୟ । ଅନ୍ଧ ଅନୁକରଣ, ଆତ୍ମପ୍ରତ୍ୟୟ ଓ ସ୍ୱାଧୀନ ଚିନ୍ତାର ଅଭାବ ଯୋଗୁ ଆମ୍ଭେମାନେ ଆଜି ଭାରତର ସୁମହାନ୍ ଅତୀତ ଆଚାର ବ୍ୟବହାର ସଭ୍ୟତା ସଂସ୍କୃତିକୁ ବିସ୍ମୃତିର ଅତଳ ଗର୍ଭରେ ନିକ୍ଷେପ କରିଦେବାକୁ ତତ୍ପର ହେଉଅଛୁ । ଜାତିର ଗୌରବମୟ ଇତିହାସକୁ ପଦାଘାତ କରି ଅତି-ଆଧୁନିକତାର ମୋହରେ ଆଚ୍ଛନ୍ନ ହୋଇଅଛୁ । ଏହା କି ଆମ୍ଭମାନଙ୍କର ଜାତୀୟ କଲ୍ୟାଣର ଅନୁକୂଳ ? ଏହି କି ଆମ୍ଭମାନଙ୍କର ଦେଶାତ୍ମବୋଧର ଜ୍ୱଳନ୍ତ ନିଦର୍ଶନ ?

ଭାରତର ଯୁବକ ଆଜି ଆତ୍ମ-ନିର୍ଭରଶୀଳ ନୁହେଁ; ସେ ପରମୁଖାପେକ୍ଷୀ ଓ ଅନୁକରଣପ୍ରିୟ । ଏ ଦେଶର ଶିକ୍ଷିତ ଯୁବକ-ମାନଙ୍କର କିଛି ଆଦର୍ଶ ନାହିଁ । ନିଜର ସୁଖ-ଦୁଃଖ ପ୍ରତି ଭ୍ରୂକ୍ଷେପ ନ କରି, ସକଳ ପ୍ରକାର ସ୍ୱାର୍ଥରେ ଜଳାଞ୍ଜଳି ଦେଇ, ମନୁଷ୍ୟ ଯେ ଦେଶ ଓ ଦଶର କଲ୍ୟାଣ ନିମନ୍ତେ ଜୀବନ ଉତ୍ସର୍ଗ କରିପାରେ, ନାମ ଓ ଯଶର କ୍ଷୀଣ ଆଶାଟି ପର୍ଯ୍ୟନ୍ତ ହୃଦୟରେ ପୋଷଣ ନ କରି ପରର ଉପକାର ନିମନ୍ତେ ଯେ ସେ ନିଜକୁ ବଳି ଦେଇପାରେ, ଖବର-କାଗଜରେ ନାମ ନ ଦେଇ ପରର ଉପକାର ନିମନ୍ତେ ଲୋକ ଯେ ପ୍ରଚୁର ଅର୍ଥ ଅକୁଣ୍ଠିତ ହୃଦୟରେ ବ୍ୟୟ କରିପାରେ, ସ୍କୁଲ ଓ କଲେଜରେ ନ ପଢ଼ି, ବିଶ୍ୱବିଦ୍ୟାଳୟରୁ ଡିପ୍ଲୋମା ଓ ସାର୍ଟିଫିକେଟ୍

ହାସଲ ନ କରି ମଧ୍ୟ ଯୁବକମାନେ ଯେ ଜ୍ଞାନ ଅର୍ଜ୍ଜନ କରି ପାରନ୍ତି—ଏହିପରି ଶିକ୍ଷା ଓ କର୍ମ୍ମର ଆଦର୍ଶ ଆମ୍ଭମାନଙ୍କ ମଧ୍ୟରୁ କ୍ରମେ ଲୁପ୍ତ ହୋଇଅଛି । ତଥାପି ଭାରତ ଆଜି ପାଶ୍ଚାତ୍ୟ ସଭ୍ୟତାରୁ ଇଉରୋପୀୟ ସମ୍ପର୍କରୁ ନିଜକୁ ବଞ୍ଚିତ କରି ନ ପାରେ । "Wester-nise or leave the Country" "ପାଶ୍ଚାତ୍ୟ ଦେଶମାନଙ୍କର ଆଦର୍ଶରେ ଅନୁପ୍ରାଣିତ ହୁଅ, ନଚେତ୍ ଏ ସ୍ଥାନ ତ୍ୟାଗକର"—ଦକ୍ଷିଣ ଆଫ୍ରିକାର ଇଉରୋପୀୟମାନେ ଥରେ ଏହି କଥା ସେଠାର ଭାରତୀୟ ଉପନିବେଶବାସୀମାନଙ୍କୁ କହି ଚେତେଇ ଦେଇଥିଲେ ।

କେବଳ ନିଜର ଅତୀତ ଇତିହାସକୁ ଗଣ୍ଠିଧନ କରି କୂପମଣ୍ଡୂକ ପରି ସଙ୍କୀର୍ଣ୍ଣତାରେ ଆବଦ୍ଧ ହୋଇ ରହିଲେ ଭାରତର ରାଜନୈତିକ ଓ ଅର୍ଥନୈତିକ ଅଧୋଗତି ଯେ ଅନିବାର୍ଯ୍ୟ ଏହା ଇତିହାସର କଠୋର ସତ୍ୟ । କେବଳ ମସ୍ତିଷ୍କ ଚାଳନା କରି ବର୍ତ୍ତମାନ କୌଣସି ଜାତି ଜଗତରେ ବଡ଼ ହୋଇ ନ ପାରେ । ପୃଥିବୀର ଅନ୍ୟାନ୍ୟ ଜାତି-ମାନଙ୍କ ସହିତ ସମାନସ୍କନ୍ଧ ହୋଇ ଛିଡ଼ା ହେବାକୁ ହେଲେ ଆମ୍ଭ-ମାନଙ୍କୁ ଦେଶର ସମସ୍ତ ପ୍ରକାର ଶକ୍ତିକୁ ଉଦ୍‌ବୁଦ୍ଧ କରାଇବାକୁ ହେବ । ଦେଶର ଶ୍ରୀ ସମ୍ପଦ ବୃଦ୍ଧି କରିବାକୁ ହେବ । ୬୦ ବର୍ଷ ତଳେ ଜାପାନ ଏହି ନୀତି ଉପଲବ୍ଧି କରିଥିଲା । ଆଜି ସେଥିପାଇଁ କ୍ଷୁଦ୍ର ଜାପାନ ପୃଥିବୀ ମଧ୍ୟରେ ଏକ ଶକ୍ତିଶାଳୀ ଦେଶ । ସେଥିପାଇଁ ଆଜି ନବଯୁଗ ଓ ନବଶକ୍ତିର ଭାରତକୁ ଏହି ଉପଦେଶ—"କୂପମଣ୍ଡୂକ ହେବାର କଳ୍ପନା ଓ ସୁଖ-ସ୍ୱପ୍ନ ପରିତ୍ୟାଗ କର । ପ୍ରଗତିଶୀଳ ବାହ୍ୟଜଗତ ସହିତ ସମକକ୍ଷ ହୋଇ ଛିଡ଼ା ହୁଅ । ତାହା ନ ହେଲେ ଏହି ଅର୍ଥ-ନୈତିକ ପ୍ରତିଯୋଗିତା ଯୁଗରେ ତୁ ଚିରକାଳ ନିମନ୍ତେ ପୃଥିବୀରୁ ଲୁପ୍ତ ହେବୁ । ଆଜି ସମଗ୍ର ଜଗତ ଗୋଟିଏ ଜାତିରେ ପରିଣତ

ଦେଖବାକୁ ଚେଷ୍ଟା କରୁଅଛୁ । ତୁ କଦାପି ସେଥିରୁ ନିଜକୁ ବଞ୍ଚିତ ରଖି ନ ପାରୁ ।" *

---

ସମାପ୍ତ

---

* "Give up your dream of isolation, standardise and come into line with the moving world outside, or you will become extinct as a race through the operation of relentless economic competition in a world which has now become as one country."—Sir Jadunath Sarkar—India through the Ages—pp 140.

---

Printed by U. C. Mohanty,
Cuttack Publishing Press, Cuttack—1947.